# ଗୋବର୍ଦ୍ଧନଲୀଳା

## ନାଟକ।





ପ୍ରକାଶକ :—

ଶ୍ରୀ ଦାଶରଥି ଦାସ ।

# ଗୋବର୍ଦ୍ଧନ ଲୀଳା
# ନାଟକ ।



ବ୍ରଜବାସୀ

ଶ୍ରୀ ବୈଷ୍ଣବଚରଣ ଦାସ ବାବାଜୀଙ୍କ ଦ୍ୱାରା

ସରଳ ଭାଷାରେ ପଦ୍ୟାନୁବାଦ ।

ଶ୍ରୀ ଦାଶରଥି ଦାସଙ୍କ ଦ୍ୱାରା ପ୍ରକାଶିତ ।



ପ୍ରଥମ ସଂସ୍କରଣ

Printed by B. S. Das,
The Mukur Press,
CUTTACK,
1928.

ମୂଲ୍ୟ ୬ ୦ ୵ ଡକଅଣା ଗା'ଫ ।

# ଭୂମିକା



## ପ୍ରକାଶକର ଗୋଟିଏ କଥା ।

ନାଟକ ଅଧ୍ୟୟନରେ ରୁଚି ଓ ଚରିତ୍ର ବିଶେଷ ମାର୍ଜିତ ହୁଏ, ଏଣୁ ଶିକ୍ଷିତ ବ୍ୟକ୍ତି ମାନେହିଁ ନାଟକର ଆଦର କରିଥାଆନ୍ତି । ଅଧୁନା ବ୍ରଜଲୀଳା ଗୀତାଭିନୟ ଓ ନାଟକର ଯେପରି ଆଦରବୃଦ୍ଧି ଅଛି, ତହିଁରେ ବାସ୍ତବିକ ଅତି ଆନନ୍ଦର କଥା । ସେଥିଯୋଗୁଁ ମୁଁ ଉକ୍ତ ବ୍ରଜଲୀଳା ନାଟକ ଗୁଡିକ ପ୍ରକାଶ କରାଇବିବୋଲି କେତେକ ବର୍ଷହେଲା ନାଟ୍ୟକାର ଶ୍ରୀଯୁକ୍ତ ବ୍ରଜବାସୀ ବାବାଜୀ ବୈଷ୍ଣବଚରଣ ଦାସ ମହାଶୟଙ୍କ ରଚିତ ଶ୍ରୀକୃଷ୍ଣଙ୍କ ଜନ୍ମଲୀଳା ଠାରୁ ଆରମ୍ଭକରି ବାଲ୍ୟ, ପୌଗଣ୍ଡ, କୈଶୋର ଲୀଳାମାନ କ୍ରମେ ପ୍ରକାଶ କରିବି-ବୋଲି ମନେ କରିଥିଲି, ତଦନୁସାରେ ଭଗବାନଙ୍କ କୃପାରୁ ବାବାଜୀ ମହାଶୟ ତାଙ୍କ ରଚିତ ନାଟକ ଗୁଡିକ ମୁଦ୍ରଣ କରାଇବା ନିମିତ୍ତ ଅନୁମତି ପ୍ରଦାନ କରିଅଛନ୍ତି । ସେଥିମଧ୍ୟରୁ ସମସ୍ତ ପ୍ରକାଶିତ ହୋଇଅଛି, ବର୍ତ୍ତମାନ ବ୍ରଜଲୀଳା ନାଟକ ଅଧିକାରୀମାନଙ୍କ ଅନୁରୋଧ ମତେ ଏହି ଗୋବର୍ଦ୍ଧନଲୀଳା ନାଟକ ଖଣ୍ଡିକ ମୁଦ୍ରଣ କରାଇବାରେ ସାହସୀ ହେଲି । ଇତି ।

ପ୍ରକାଶକ— ଶ୍ରୀ ଦାଶରଥି ଦାସ ।



## ନାଟ୍ୟୋଲ୍ଲିଖିତ ଅଭିନେତା ଓ ଅଭିନେତ୍ରୀମାନଙ୍କ ପରିଚୟ ।

### ପୁରୁଷ ଗଣ ।

ଇନ୍ଦ୍ର, ବୃଦ୍ଧଷ୍ଠ, ମାତୁଳି, ନାରଦ, ଶ୍ରୀକୃଷ୍ଣ, ବଳରାମ, ସୁବଳ, ସୁଦାମ, ମଧୁମଙ୍ଗଳ, ନନ୍ଦ, ଉପନନ୍ଦ, ବସୁନନ୍ଦ, ସୁନନ୍ଦ, କଣ୍ଡୁର, ଗୋପାଳଗଣ, ଅନେକ ବ୍ରଜବାଳକ, ସଦା, ଭଦା, ବଦା, ମଧିଆ, ହିଡିଆ ।

### ସ୍ତ୍ରୀ ଗଣ ।

ଶ୍ରୀରାଧା, ଲଳିତା, ବିଶାଖା, ବୃନ୍ଦା, କମଳା, ବିମଳା, ଯଶୋଦା ରାଣୀ ଓ ବ୍ରଜର ଅନ୍ୟାନ୍ୟ ଗୋପିମାଗଣ ।

ଶ୍ରୀଶ୍ରୀ ରାଧାଗୋବିନ୍ଦ ରାସଲୀଳା
ସତ୍ୟବାଦୀ ।
ତାଂ ।୭।୧୮

କୃଷ୍ଣଭକ୍ତ କୃପାଭିକ୍ଷୁ କାଙ୍ଗାଳ
ବ୍ରଜବାସୀ
ଶ୍ରୀ ବୈଷ୍ଣବଚରଣ ଦାସ ।
ବାବାଜୀ ।



# ଗୋବର୍ଦ୍ଧନ ଲୀଳା ନାଟକ ।



## ପ୍ରଥମ ଅଙ୍କ ।

### ପ୍ରଥମ ଦୃଶ୍ୟ—ଅମରାବତୀ ।

(ଇନ୍ଦ୍ର, ବୃହସ୍ପତି, ମାରୁତ ଓ ପ୍ରତିହାରୀମାନଙ୍କ ସ୍ୱ ସ୍ୱ ଆସନ
ଅପ୍ସରାମାନଙ୍କ ନୃତ୍ୟ ଓ ଗାନ)

**ଗୀତ ।**

(ମୁଁ ଯମୁନା ଯିବନାହିଁ ଗୋ ବୁଢ଼ୀ)

ଆଉ ରହିବ ନାହିଁ ଏ ଭୟ ଗୋ ।
ପତିତପାବନ ମର୍ତ୍ତେ ହୋଇଛନ୍ତି ଉଦୟ ଗୋ । ପଦ ।

ନରରୂପେ ନାରାୟଣ, ଉଦ୍ଧାରନ୍ତି ତ୍ରିଭୁବନ,
ଦେବତାମାନଙ୍କ ଦୁଃଖ କରନ୍ତି ସେ କ୍ଷୟ ଗୋ । ୧ ।

ଶୋକ ତାପ ଦୂର ହେବ, ଆନନ୍ଦ ସ୍ରୋତ ବହିବ,
କଂସକୁ ନାଶି ମାଧବ, ଘୋଷାଇବେ ଜୟ ଗୋ । ୨ ।

ଦର୍ପ ଦଳିବା ନିମନ୍ତେ, ପ୍ରଭୁ ଜନମନ୍ତି ମର୍ତ୍ତ୍ୟେ,
ମାରିବା ତାରିବା ଛଳେ ଦେଖାନ୍ତି ଅଭିନୟ ଗୋ । ୩ ।

ଘୋର କଂସ ଦୁରାଚାର, ଅନାଥ କରେ ଅପାର.
ସ୍ୱର୍ଗେ ରଜା ହେବ ବୋଲି ମନେକରିଛି ଅଧମ ଗୋ ।୪।

(ସମସ୍ୱରେ ଗାନ ସହ ନୃତ୍ୟ ଅଭିନୟ)

ମାତୁଳି– ଆହା ! ବସନ୍ତ ସମୟରେ କୋକିଳ କଣ୍ଠ ବିନିନ୍ଦିତ ମଧୁର ସ୍ୱର ଅପ୍ସରମାନେ ଠିକ ସମୟୋଚିତ ଗୀତ ଗାନକଲେ, ପ୍ରଭୁ ! ଗୋଲୋକପୁରୀ ଶୂନ୍ୟକରି ପୃଥିବୀର ଭାର ନାଶକରିବା ନିମିତ୍ତ ନନ୍ଦନନ୍ଦନରୂପେ ମର୍ତ୍ତ୍ୟମଣ୍ଡଳରେ ଅବତୀର୍ଣ୍ଣ ହୋଇଛନ୍ତି, ସେହି ଉପଲକ୍ଷକରି, ସାଧାରଣ ଦୁଃଖ-ମଗ୍ନ ମନୁଷ୍ୟଙ୍କୁ ଆଶ୍ୱାସ ଦେବାର ନିମିତ୍ତ ଏହି ଗୀତଟି ରଚିତ ହୋଇଥିଲା । ଆହା ସଙ୍ଗୀତର କି ଅନିର୍ବଚନୀୟ କ୍ଷମତା, ଏହାର ପ୍ରଭାବରେ ନିତାନ୍ତ ପାଷଣ୍ଡର ନିର୍ଦ୍ଦୟ ହୃଦୟ ଦ୍ରବୀଭୂତ ହୋଇଯିବ । ଦାରୁଣ ଅପତ୍ୟ ଶୋକର ବିଷମ-ଜ୍ୱାଳା ମଧ୍ୟ ପ୍ରଶମିତ ହେବା ଅସମ୍ଭବ ନୁହେଁ । କିନ୍ତୁ ଅନେକ—ବିମୂଢ ନିତାନ୍ତ ଲଘୁଚିତ୍ତ ମନୁଷ୍ୟମାନେ ଏହି ସ୍ୱର୍ଗୀୟ ପବିତ୍ର ବସ୍ତୁକୁ ନିତାନ୍ତ କଳୁଷିତ ଭାବରେ ବ୍ୟବହାର କରି ଥାଆନ୍ତି ।

ଇନ୍ଦ୍ର—ମାତୁଳି ! ତୁମ୍ଭେ ଯାହା କହିଲ—ସେକଥା ସତ୍ୟ, କିନ୍ତୁ ସାମାନ୍ୟ ଜଳ ଯେମନ୍ତ କୁସୁମ ସଂସର୍ଗରେ ସୁରଭିତ ହୁଏ, ସେହିପରି ପ୍ରଭୁଙ୍କ କୃପାରେ ମଧ୍ୟ ସ୍ୱ ସ୍ୱ ବିଶ୍ୱାସ ପ୍ରଭାବେ ସେହି କ୍ଷୀଣମତି ମନୁଷ୍ୟମାନେ ଏହିଠାରୁ ଅମରତ୍ୱ ଅବଧି ଲାଭରେ ସମର୍ଥ ହେବେ । ପଛେ ତାଙ୍କର ସୃଷ୍ଟିମଧ୍ୟ ସଂସାର ଭ୍ରମର ତମଃ କାଳେ ଆଚ୍ଛନ୍ନ ହୁଏ, ପଛେ ନିର୍ଦ୍ଦୋଷୀର ପଥ ମାନବର ପକ୍ଷେ ଏକାବାଟରେ ରୁଦ୍ଧ ହୁଏ, ପଛେ ଦୁର୍ବଳ ପ୍ରବଳ କର୍ତ୍ତୃକ ନିପୀଡ଼ିତ ହୁଏ, ସେ ସମସ୍ତେ ସେହି ପରମ-ପୁରୁଷଙ୍କ ବ୍ୟାପୀ ସର୍ବଜ୍ଞ ହୋଇ ବାଳକରୂପଧାରଣ

କରଛନ୍ତି, ହର୍ଷ, ବିଷାଦ, ଶୋକ, ଦୁଃଖ ପ୍ରଭୃତି ଜଗତର ଗୁଣଗ୍ରାମର ବଶୀଭୂତ ହୋଇଛନ୍ତି, ତା, ନହେଲେ ସଂସାର-ରଙ୍ଗଭୂମିରେ ଏପରି ଅପୂର୍ବ ଅଭିନୟ କରିବାର ତାଙ୍କର ଆବଶ୍ୟକ କଅଣ ଥିଲା ?

ବୃହସ୍ପତି— ସେହି ଲୀଳାମୟଙ୍କର ଅପୂର୍ବ ଲୀଳାକାଣ୍ଡର ମର୍ମ୍ମ ଉପଲବ୍ଧି କରିବା ଆମ୍ଭମାନଙ୍କର ଅବଧି କ୍ଷମତାତୀତ; ତେବେ ଉଦ୍ଦେଶ୍ୟ ହୀନ କୌଣସି କାର୍ଯ୍ୟହିଁ ସେହି ପରାତ୍ପର ପରମ ପୁରୁଷଙ୍କ ଦ୍ୱାରା ଅନୁଷ୍ଠିତ ହୋଇପାରେ ନାହିଁ । କେବଳ ମାତ୍ର ଭ୍ରାନ୍ତଜୀବର ମଙ୍ଗଳ ନିମନ୍ତେ ସେହି ମଙ୍ଗଳ-ମୟ ଭଗବାନ୍ କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୁଅନ୍ତି ।

ଇନ୍ଦ୍ର—ତାହା ଠିକ୍ ସଂସାର ମଧ୍ୟରେ ଯେତେବେଳେ କୌଣସି ଦୁରାତ୍ମା କାଳପ୍ରେରିତ ହୋଇ ଦେବ ଦ୍ୱିଜମାନଙ୍କ ଉପରେ ବିଦ୍ୱେଷ ସମ୍ପନ୍ନ ହୁଅନ୍ତି, ବାହୁବଳରେ ନିରୀହ ବ୍ୟକ୍ତିମାନଙ୍କ ଉପରେ ଅତ୍ୟାଚାର କରନ୍ତି, ସେହି ସମୟରେ ଭକ୍ତବତ୍ସଳ ଶ୍ରୀହରି ମାନବମୂର୍ତ୍ତି ପରିଗ୍ରହକରି ଜଗତରେ ଶାନ୍ତି ସ୍ଥାପନ କରନ୍ତି । ଏହିଥର କଂସ ପ୍ରଭୃତି ଦୁର୍ଦ୍ଦାନ୍ତ ପାପାତ୍ମାମାନଙ୍କର ପାପରେ ପୃଥ୍ୱୀପୂର୍ଣ୍ଣ ହୋଇଅଛି, ତାକୁ ଧରଣୀର ଭାର ମୋଚନ ହେବାଲାଗି ପ୍ରଭୁ ଧରା ଧାମରେ ଅବତୀର୍ଣ୍ଣ ହୋଇଛନ୍ତି ।

ବୃହସ୍ପତି—ଦର୍ପିମାନଙ୍କ ଦର୍ପନାଶ ବ୍ୟତୀତ, ଆଉ କୌଣସି ବିଶେଷ ଉଦ୍ଦେଶ୍ୟ ସିଦ୍ଧି ନିମିତ୍ତ ଏହିଥର ଭଗବାନ୍ ମାନବ ମୂର୍ତ୍ତି ଧାରଣ କରିଛନ୍ତି । ଯେପରିକି ରୋଗୀର ଅନିଚ୍ଛାସତ୍ତ୍ୱେ ତାର ଆତ୍ମୀୟ ଜନମାନେ ବଳପୂର୍ବକ ଔଷଧସେବନ କରାନ୍ତି, ସେହିପରି ଦୁରାଶାବିକାରଗ୍ରସ୍ତ ଭ୍ରାନ୍ତ ମାନବ-ମାନଙ୍କୁ ବିମଳ ଭକ୍ତି ଶିକ୍ଷାଦେବା ଏହି କୃଷ୍ଣଲୀଳାର ପ୍ରଧାନ

ଉଦ୍ଦେଶ୍ୟ । ପ୍ରଭୁଙ୍କ ଅନୁକମ୍ପାବଳରେ ଜଗତରେ ଭକ୍ତିର ସ୍ରୋତ ପ୍ରବାହିତ ହେବ, ଶତ ଶତ ତାପିତ ଅନ୍ତର ଯେ, ସେହି ସ୍ରୋତରେ ଅବଗାହନକରି ଶୀତଳ ହେବେ ତାହା ନିଶ୍ଚିତ ।

ମାତଲି—ଦେବରାଜ ! ଯୋଗନିରତ ମହାତ୍ମା ନାରଦଙ୍କ ସୁମଧୁର ଗାନଧ୍ୱନି ଶୁଣାଯାଉଛି, ବୋଧହୁଏ ଏହିକ୍ଷଣି ସେ ଏହି ଦେବରାଜ ସ୍ଥଳରେ ଆସି ପହଞ୍ଚିବେ ।

(ଗୀତ ଗାଇ ଗାଇ ନାରଦଙ୍କର ପ୍ରବେଶ)

ରାଗିଣୀ କେଦାର-ତାଳ ଚଉତାଳି ।

(କୀର୍ତ୍ତନ)

ଜୟ ଯଶୋଦାନନ୍ଦନ, ଯଦୁପତି ଜନାର୍ଦ୍ଦନ,
ମଙ୍ଗଳେଶ୍ୱର ଜଗତ ଜୀବନ ।

ଜୟ ଜୟ ଜଗନ୍ନାଥ, ଶ୍ରୀପତି ଶ୍ରୀନାଥ,
ରମାକାନ୍ତ ରସିକ ରତନ ।

କାଳିୟ ହାରୀ କୃଷ୍ଣ କଂସାରି,
ମନମୋହନ ମୁକୁନ୍ଦ ମୁରାରି ।

ପ୍ରଲୟପର ମେଷ, କେଶବ ଶ୍ରୀହରି,
ଦୟାମୟ ନିତ୍ୟ ନିରଞ୍ଜନ । ୧ ।

(ଘଣ୍ଟା ବାଦନ ଅତନୟ)

ଇନ୍ଦ୍ର—(ସାଦରେ) ଆସନ୍ତୁ, ଆସନ୍ତୁ ଦେବର୍ଷେ! ଭବଦୀୟ ପାଦପଦ୍ମ ସନ୍ଦର୍ଶନ କରି ଆଜି ମୁଁ କୃତାର୍ଥ ହେଲି, ବର୍ତ୍ତମାନ ନିବେଦନ କରେଁ କି ଆପଣ କେଉଁଠାରୁ ଏଠାକୁ ଶୁଭାଗମନ କଲେ ?

ନାରଦ—(ସାନନ୍ଦେ) ଦେବରାଜ ! ମୁଁ ଗୋକୁଳରେ ବାଳକ-ବେଶଧାରୀ ଭଗବାନଙ୍କୁ ଦର୍ଶନ କରିବା ପାଇଁ ଯାଇଥିଲି । ଆହା କି ଆଶ୍ଚର୍ଯ୍ୟ, ପ୍ରଭୁଙ୍କର ଯେଉଁ ବିରାଟ ମୂର୍ତ୍ତି ସୁର-ଅସୁରଙ୍କର ଭୀତିପ୍ରଦ, ଆଜି ସେହି ନୀଳନୀରଦନିଭ-ଶ୍ୟାମ ରୂପରେ ପରିଣତ ହୋଇଛନ୍ତି । ଭୀଷଣତା ସହିତ ମଧୁରତାର ସମ୍ମିଶ୍ରିତ ହୋଇଅଛି । ଯଦିଚ ଭଗବାନ ବାଳକ ରୂପ ଧାରଣ କରି ଲୀଳା ଖେଳାରେ ପ୍ରବୃତ୍ତ ହୋଇ-ଛନ୍ତି, କିନ୍ତୁ ପ୍ରଭୁଙ୍କର ସେହି ଅସୀମ ସ୍ୱର୍ଗୀୟ ସୌନ୍ଦର୍ଯ୍ୟ ଭସ୍ମାଚ୍ଛାଦିତ ଅଗ୍ନି ପରି ଅନ୍ତଃପ୍ରଦେଶରେ ପ୍ରଜ୍ୱଳିତ ରହିଅଛି । ବିନ୍ଦୁ ବିନ୍ଦୁ ବାରି ସୂର୍ଯ୍ୟ କିରଣରେ ପତିତ ହେଲେ ଯେପରି ସୁବର୍ଣ୍ଣରେ ସୁରଞ୍ଜିତ ହୁଏ । ସେହିପରି ପ୍ରଭୁଙ୍କର ଐଶ୍ୱରିକ ଭାବ ମନୁଷ୍ୟ ଭାବର ସହିତ ମିଶି ଯେଉଁ ଅପୂର୍ବ ଶୋଭା ବିସ୍ତାର କରିଅଛି, ତାହା ବ୍ୟକ୍ତ କରିବା ମୋ ଦୁର୍ବଳ ରସନାର ସାଧ୍ୟାତୀତ । ମୁଁ ନନ୍ଦ ଆଳୟରେ ବାଳକରୂପୀ ଭଗବାନଙ୍କର ଶ୍ରୀଚରଣ ଦର୍ଶନକରି ଆଜି କୃତାର୍ଥ ହୋଇଅଛି ।

ଇନ୍ଦ୍ର—ପ୍ରଭୋ ! ଭଗବାନ ଯେତେବେଳେ ଅବନୀ ମଣ୍ଡଳରେ ଅବତୀର୍ଣ୍ଣ ହୋଇ ଲୀଳା ଖେଳାରେ ପ୍ରବୃତ୍ତ ହୋଇଛନ୍ତି । ସେତେବେଳେ ନିଶ୍ଚୟ ହିଁ ସେ ମାନବ ସୁଲଭ ଭ୍ରମର ବଶ-ବର୍ତ୍ତୀ ହେବେ । କାରଣ ପ୍ରତ୍ୟେକ ଅବତାରରେ ସେ ଆତ୍ମ-ବିସ୍ମୃତ ହୋଇଥାନ୍ତି, ସେଥିଲାଗି ଏ ସମୟରେ ଭଗବାନଙ୍କ ସହିତ ମୁଁ ଗୋଟିଏ ରହସ୍ୟ କରିବାକୁ ଇଚ୍ଛା କରେ ।

ନାରଦ—ଦେବରାଜ ! ଅସୀମ ଭୂଗର୍ଭ, ଅତଳ ପାତାଳ, ତଳ, କି କୁଳଟି ମାନବର ହୃଦୟାଭ୍ୟନ୍ତର ଯାହାଙ୍କ ଜ୍ଞାନ ଦୃଷ୍ଟିର ଆୟତ୍ତାଧୀନ, ତାଙ୍କର ସଙ୍ଗରେ କି ରହସ୍ୟ

କରିବେ ? ବିଷଧର ସମ୍ମୁଖରେ କର ସଞ୍ଚାଳନ କରିବା କଅଣ ବିପଦ ଜନକ ନୁହେଁ ? କେଶରୀର କେଶର ଆକର୍ଷଣ କଅଣ ସୁବୋଧର କାର୍ଯ୍ୟ ।

ଇନ୍ଦ୍ର—ଦେବର୍ଷି ! ପ୍ରଭୁଙ୍କ ଅସୀମ ଐଶ୍ୱରିକ ଶକ୍ତି ମୋର ଅପରିଜ୍ଞାତ ନୁହେ, କିନ୍ତୁ ଶର୍କରର ମିଷ୍ଟତା ପରୀକ୍ଷା ପ୍ରାୟ ମୁଁ ଥରେ ମାତ୍ର ସେହି ପରାତ୍ପର ପରମପୁରୁଷଙ୍କ କ୍ଷମତାର ପରିଚୟ ଗ୍ରହଣ କରିବି ।

ମାତଲି—କି ଉପାୟରେ ଆପଣ ଏହିକାର୍ଯ୍ୟ ସମ୍ପାଦନ କରିବେ ?

ଇନ୍ଦ୍ର—ଅତି ସହଜରେ ମୋର ମନୋରଥ ପୂର୍ଣ୍ଣ ହେବ । ମୁଁ ଜାଣେ ବୃନ୍ଦାବନ ଆଜିକାଲି ପ୍ରଭୁଙ୍କର ଅତ୍ୟନ୍ତ ପ୍ରିୟ ସ୍ଥାନ ହୋଇଅଛି ଓ ଗୋପ ଗୋପିନୀମାନଙ୍କର ମାୟା ଜାଲରେ ପ୍ରଭୁ ନିତାନ୍ତ ଆବଦ୍ଧ ହୋଇଛନ୍ତି । ମୁଁ ଅଧିବାସୀ ସହ ସେହି ବୃନ୍ଦାବନକୁ ଧ୍ୱଂସକରିବା ପାଇଁ ଅନବରତ ଜଳବର୍ଷଣ କରିବି ଓ ପ୍ରବଳ ଝଟିକା ଉତ୍ଥିତ କରିବା ପାଇଁ ପବନଦେବଙ୍କୁ ଆଜ୍ଞା ଦେବି । କାଯେ କାଯେ ଝଡ଼ତୋଫାନରେ ଓ ଅନବରତ ଜଳବର୍ଷଣରେ ବୃନ୍ଦାବନ ଧ୍ୱଂସଦଶାରେ ପତିତ ହେବ, ଦେଖି ସେ କି ଉପାୟରେ ତାହାଙ୍କ ମନମତ ବାସସ୍ଥାନ ରକ୍ଷା କରନ୍ତି ?

ବୃହସ୍ପତି—ଏ ଉପାୟଟି ମନ୍ଦନୁହେ, ଏଥିରେ ବଡ଼ ଆନନ୍ଦଅଛି ।

ନାରଦ—ଦେବରାଜ ! ତୁମ୍ଭର ଏ ମନର ଭ୍ରମ ନିଶ୍ଚୟ ନିରାକୃତ ହେବ । ତୁମ୍ଭେ ବାଳକବେଶୀ ଶ୍ରୀ ଭଗବାନଙ୍କର ଅସୀମ ଐଶ୍ୱରିକ ଶକ୍ତି ସନ୍ଦର୍ଶନରେ ଚମତ୍କୃତ ହେବ ଓ ବିମଳ ଭକ୍ତି ରସରେ ତୁମ୍ଭର ଚିତ୍ତପ୍ଲାବିତ ହୋଇଯିବ, ଅଗ୍ନି ଯେପରି କପୂରରେ ଲୁକ୍କାୟିତ ରହିବାର ସାମଗ୍ରୀ ନୁହେ,

ସେହିପରି ପ୍ରଭୁଙ୍କର ଅସୀମ ତେଜ କଅଣ କେବେ ଲୁପ୍ତ ହୋଇ ପାରେ ? ନିଷ୍ଟୟ କରିଥାନ୍ତି ଶ୍ରବଣରେ ଭୀମ ଅଜଗର ଯେପରି କ୍ରୁଧ ହୋଇ ଉଠେ, ସେହିପରି ତୁମ୍ଭର ଏ କାର୍ଯ୍ୟରେ ପ୍ରଭୁଙ୍କ ରୋଷାନଳ ପ୍ରଦୀପ୍ତ ହୋଇ ଉଠିବ ଓ ଅନ୍ୟାନ୍ୟ ସାଧାରଣ ଐଶ୍ବରିକ ତେଜ ପ୍ରଭାବରେ ସମସ୍ତ ମାୟାଜାଲ ବ୍ୟର୍ଥ ହୋଇଯିବ ।

ଇନ୍ଦ୍ର—ତା ହେଉ, ସେଥିରେ କୌଣସି କ୍ଷତି ନାହିଁ, କିନ୍ତୁ ପ୍ରଭୁଙ୍କର ଅପାର ମହିମାତ ଜଗତରେ ବିଘୋଷିତ ହେବ । ସମସ୍ତେତ ଏହି ଅଦ୍ଭୁତ ଲୀଳାଦର୍ଶନରେ ତାଙ୍କୁ ପରମପୁରୁଷ ବୋଲି ତାଙ୍କୁ ଅବନତ ମସ୍ତକେ ସ୍ୱୀକାର କରିବେ, ତା' ହେଲେ ଯଥେଷ୍ଟ, ଆଉ ମୋର କିଛି ଅନ୍ୟ ଉଦ୍ଦେଶ୍ୟ ନାହିଁ ।

ନାରଦ—ଭଲ, ତୁମ୍ଭର ଏ ସାଧୁ ଇଚ୍ଛାଟି ଫଳରେ ପରିଣତ ହେଉ, ତହିଁରେ ମୋର କୌଣସି ଆପତ୍ତି ନାହିଁ, କିନ୍ତୁ ମନ ମଧ୍ୟରେ ଠିକ୍ ଜାଣ ଯେ ଭକ୍ତବତ୍ସଳ ଭଗବାନ୍ ଭକ୍ତଙ୍କ ରକ୍ଷା ନିମନ୍ତେ କିଛି ନା କିଛି ଉପାୟ ନିର୍ଦ୍ଧାରଣ କରିବେ, ତା ନକଲେ ଶୁଭ୍ରବସ୍ତ୍ର ଖଣ୍ଡିକରେ କଜ୍ଜଳବିନ୍ଦୁପରି ତାଙ୍କ ଦୟାମୟ ନାମରେ ଯେ କଳଙ୍କ ସ୍ପର୍ଶ କରିବ । ପ୍ରଭୁଙ୍କର ଏହି ମଧୁର କୃଷ୍ଣଲୀଳାରେ ଦେବଦ୍ୱିଜଦେଷି ଅନେକ ପାପାତ୍ମା ଜଗତରୁ ଅପସରିତ ହେବେ, ସତ୍ୟ, କିନ୍ତୁ ଏହା ବ୍ୟତୀତ ଦୋଳମଣ୍ଡଳ, ରାସଲୀଳା ଭୃତିଙ୍କ ଲୀଳାର ଉପଲକ୍ଷେ ମୁଖ ମନୁଷ୍ୟମାନଙ୍କୁ ଅନେକ ନିଗୂଢ଼ ଯୋଗତତ୍ତ୍ୱ ଶିକ୍ଷା ଦେବେ ଓ ଆପଣା ଅସୀମ ଶକ୍ତିର ପରିଚୟ ପ୍ରଦାନ କରିବେ । ଏମନ୍ତ କି ବିଶ୍ୱବିଜୟି ମଦନ-ପର୍ଯ୍ୟନ୍ତ ପ୍ରଭୁଙ୍କ ନିକଟରେ ପରାଜୟ ସ୍ୱୀକାର କରିବାକୁ ବାଧ୍ୟ ହେବେ । ଶତ ଶତ ଊର୍ଦ୍ଧ୍ୱରେତା ଜିତେନ୍ଦ୍ରିୟ

ଋଷିମାନେ ତାହାଙ୍କ ଅଶେଷ ସାଧାରଣ କ୍ଷମତାର ପରିଚୟ ପାଇ ଚମତ୍କୃତ ହେବେ ଓ ଶତ ମୁଖେ ଭଗବାନଙ୍କର ଅଲୌକିକ ଲୀଳା କାଣ୍ଡର ସୁଖ୍ୟାତି କରିବାରେ ବାଧ୍ୟ ହେବେ ।

ଇନ୍ଦ୍ର—ଚାଲନ୍ତୁ, ଆସେମାନେ ଭଗବାନଙ୍କର ଲୀଳାରଙ୍ଗ ଦେଖିବା ପାଇଁ ଗମନ କରିବୁଁ ତା'ପର ସୁବିଧା ମତେ ମୋ ଇଚ୍ଛା କାର୍ଯ୍ୟରେ ପରିଣତ କରିବି ।

ମାରୁତ—ଯେ ଆଜ୍ଞା ! ଚାଲନ୍ତୁ ମୁଁ ମଧ୍ୟ ତୁମ୍ଭଙ୍କ ସହିତ ଗମନ-କରିବି ।

ନାରଦ—ତେବେ ଆସନ୍ତୁ ।

(ସମସ୍ତଙ୍କ ପ୍ରସ୍ଥାନ)

ପଟ୍ଟ ପରିବର୍ତ୍ତନ

## ଦ୍ୱିତୀୟ ଦୃଶ୍ୟ—ବୃନ୍ଦାବନ ।

(ଗୋଷ୍ଠ ବେଶରେ ଶ୍ରୀକୃଷ୍ଣ, ବଳରାମ ଓ ଅନ୍ୟାନ୍ୟ ଗୋପଶିଶୁ-ମାନେ ଗୀତ ଗାଇ ଗାଇ ପ୍ରବେଶ)

### ଗୀତ

( କାଉଁନସ୍ୱର—ତାଳ ଝେମ୍ପା )

ଚାଲ ଚାଲ ଭାଇ, ଗୀତ ଗାଇ ଗାଇ;
ନାଚ ନାଚ ଗୋଠେ ଯିବା ।
ହେଲାଣି ପ୍ରଭାତ, ମନ ସୁଖେ ମିତ;
କଦମ୍ବ ତଳେ ଖେଳିବା । ପଦ ।

ପୂର୍ବ ଦିଗ ଦେଖ ରକ୍ତିମାବରଣ,
ସୁନ୍ଦରୀ ଶିରେ କି ସିନ୍ଦୂର ଭୂଷଣ;
ବହୁଛି ମୃଦୁଲ ଶୀତଳ ସମୀରଣ,
ମୋହୁଛି ମାନସ କବା । ୧ ।

ପୁଚ୍ଛ ଟେକି ଧାଇଁ ଛନ୍ତି ଧେନୁମଲ,
ହମ୍ବା ହମ୍ବା ରବ କରଣ ସକଳ
ଏ ମଧୁରମୟ ବୃନ୍ଦାବନ ସ୍ଥଳ,
ଆହା ଦିଶେ କେଡେ ଶୋଭା । ୨ ।

ଶାଖେ ଶାଖେ ବସି ନାନା ପକ୍ଷିଗଣ,
ସୁଖେ କରୁଛନ୍ତି ସୁମଧୁର ସ୍ୱନ;
ହୀରକ ଶିଶିର ପତ୍ରରେ ମଣ୍ଡନ,
ଆହା କି ଉପମା ଦେବା । ୩ ।

ଫୁଟିଅଛି ତରୁ—ଲତିକାରେ ଫୁଲ,
ନାହିଁ ନାହିଁ କାହିଁ ଶୋଭା ସମତୁଲ;
ଝଙ୍କାର ନାଦରେ ଅତି ପ୍ରଫୁଲ୍ଲରେ,
ଅଳି ଚୁମ୍ବେ ହୋଇ ଲୋଭା । ୪ ।
( ସମସ୍ୱରେ ଗାନ ଓ ନର୍ତ୍ତନ )

ଶ୍ରୀକୃଷ୍ଣ—ଭାଇ ! ଆଜ ଆମେମାନେ ସମସ୍ତେ ଖୁବ୍ ନିବିଡ଼ ବନ ଭିତରକୁ ଯାଇ ଖେଳ ଖେଳିବା ! କାରଣ ଆଜିକାର ଖେଳଟା ଗୋଟିଏ ନୂତନ ଧରଣରେ ହେବ ।

ସୁବଳ—ହଁ ଭାଇ ! ତୋର ଯେ କି ଇଚ୍ଛା ସେହି କଥା କରିବା ।

ବଳରାମ—(ସ୍ୱଗତଃ) ଆଜ ପୁଣି କାହ୍ନୁର କି ନୂତନ ଭାବ ଉପସ୍ଥିତ ? ଯେଣୁ ନିବିଡ଼ ବନ ଭିତରକୁ ଯିବାର ଅଭିପ୍ରାୟ ହେଲା, ମୁଁ ଏଥିରୁ ଜାଣି ପାରୁଛି ଅବଶ୍ୟ କିଛି ଗୂଢ଼ ଉଦ୍ଦେଶ୍ୟ ଅଛି. ଯେପରି ଅଳ୍ପ ଅଳ୍ପ ପବନ ନହେଲେ ସରୋବର ଜଳ ଲହରୀ

ଉଠେନାହିଁ, ସେହିପରି କିଛି ବିଶେଷ କାରଣ ଉଦ୍ଧ ନ ଥିଲେ ନିରର୍ଥକ କିଛି କଥାଭାଷା ମୁଖରୁ ନିଃସୃତ ହୋଇପାରେ ନାହିଁ । ଆଜି ହଠାତ୍ କୃଷ୍ଣ କିଛି ନା କିଛି ଅଲୌକିକ ଲୀଳା ପ୍ରକାଶ କରିବ, (ପ୍ରକାଶ୍ୟେ) ଭାଇ କାହ୍ନୁ ! ଆଜି ନିବିଡ଼ ବନ ମଧ୍ୟକୁ ଯିବାପାଇଁ କାହିଁକି ମନ ବଳାଇଲୁ ? କହ ଭାଇ ଆଜି କି ଖେଳା ଖେଳିବୁ ?

ଶ୍ରୀକୃଷ୍ଣ—ଭାଇ ! ତେମେତ ଜାଣ, ପ୍ରତିଦିନ ନୂଆ ନୂଆ ଖେଳ ଖେଳିବାକୁ ଏଠାକୁ ଆସୁଥାଉଁ, ଯେତେଶୀଘ୍ର ପାରିବା ସବୁ ଖେଳ ଗୁଡ଼ାକ ଶେଷକରି ନେବାକୁ ହେବ, ତେବେ ଆଜିର ଯେଉଁ ନୂଆ ଖେଳଟି ହେବ, ତାହା ପରେ ଜାଣି ପାରିବ ।

ସୁଦାମ—ଭାଇ ! ଆମମାନଙ୍କ ଗାଈ ସବୁ କ୍ରମେ କ୍ରମେ ଦୂରକୁ ଚାଲି ଗଲେଣି, ଚାଲ ଆମେମାନେ ଯିବା ।

ଶ୍ରୀକୃଷ୍ଣ—ଚାଲଭାଇ ଚାଲ, କିନ୍ତୁ ଭାଇ ! ଆମେମାନେ କେତେଜଣ ଅଛେଇଁ ଥରେ ଗଣି ଦେଖ ତ ?

ସୁବଳ—ସଖା ! ଆମେ ବାରଜଣ ଅଛେଁ ।

ମଧୁମଙ୍ଗଳ—ନା ନା, ବାର ଊଣା ଜଣେ ଅଛେଁ ।

ଶ୍ରୀକୃଷ୍ଣ—ଆଚ୍ଛା ଚାଲ ଆମେମାନେ କ୍ରମେ ବନ ମଧ୍ୟକୁ ଯିବା ।

(ସମସ୍ତଙ୍କ ପ୍ରସ୍ଥାନ)

ପଟ୍ଟ ପରିବର୍ତ୍ତନ ।



## ତୃତୀୟ ଦୃଶ୍ୟ—ବ୍ରଜପଥ ।

(ଗୀତ ଗାଇ ଗାଇ ନାରଦଙ୍କ ପ୍ରବେଶ)

### ଭଜନ

ସର୍ଦ୍ଧନସ୍ୱର—ତାଳ ଏକତାଲ ।

ଭଜରେ ମନ ଶ୍ରୀନନ୍ଦନନ୍ଦନ ମୋହନ ମୁରଲୀଧାରୀ,
ଭକତରଞ୍ଜନ ଗରବଗଞ୍ଜନ ଶ୍ୟାମବନ୍ଧୁ କଇତ ଵୀ ॥
(ଘୋଷା)

ଶରଣ ରକ୍ଷଣ ଦେବ ଜନାର୍ଦ୍ଦନ,
ପତିତ- ପାବନ କମଳ ନୟନ;
ଅଗତିର ଗତି ଶ୍ରୀଧର ଶ୍ରୀପତି,
ଶ୍ରୀ ବୃନ୍ଦାବନ ବିହାରୀ । ୧ ।

ଭବଭୟହାରୀ ବିପଦ ଭଞ୍ଜନ,
ସତ୍ୟ ସନାତନ ନିତ୍ୟ ନିରଞ୍ଜନ,
ବଂଶୀଧରଶିଖୀ ନିକୁଞ୍ଜ ବିଳାସୀ,
ଦେବଦ୍ୱିଜ ହିତକାରୀ । ୨ ।

ନାରଦ—(ସ୍ୱଗତଃ) ହରିବୋଲ ! ହରିବୋଲ ! ହରିବୋଲ ! ହରିହେ ! ସବୁ ତୁମ୍ଭର ଖେଳ, ତୁମ୍ଭ ଖେଳ ତୁମ୍ଭେ ଏକା ବୁଝିପାର, ଅନ୍ୟ ଜଣେକଏ ତୁମ୍ଭ ଖେଳର ମହିମା ବୁଝି-ପାରିବ ? ଗୋବିନ୍ଦହେ, ତୁମ୍ଭ କଟାକ୍ଷରେ ବ୍ରହ୍ମାଣ୍ଡ କୋଟି କୋଟି ବାର ସୃଷ୍ଟି ହୁଏ, ପୁଣି କୋଟି କୋଟିବାର ଲୟ ହୁଏ, ଏବେ ତୁମ୍ଭେ ସ୍ୱୟଂ ଗୋଲକ ପରିତ୍ୟାଗକରି ଭୂମଣ୍ଡଳ ଲୀଳାଖେଳା କରୁଛ, ଧନ୍ୟ ତୁମ୍ଭର ଲୀଳା, ଧନ୍ୟ ତୁମ୍ଭର ଖେଳ ଧନ୍ୟ ତୁମ୍ଭର ମହିମା । (ମନଗ୍ରତ) ମନରେ ! ଅବୋଧ ହୁଅନା, ସେହି ଦୟାମୟ କରୁଣା ସାଗର ଦୁଃଖ ନାଶନଙ୍କ

ନାମାମୃତ ପାନରୁ ବଞ୍ଚିତ ନହୋଇ ସେହି ଶ୍ରୀହରିଙ୍କ ଐଶ୍ୱରିକ ଲୀଳା ଦର୍ଶନ କରିବାକୁ ଚାଲ, ଆହା ! ଏ ବ୍ରଜ-ମଣ୍ଡଳର ତପସ୍ୟା ଧନ୍ୟ ଯେଣୁ ଗୋଲକପତି ଭଗବାନ ବ୍ରଜବାଳକ ରୂପରେ ନାନାବିଧ ଲୀଳା ପ୍ରକାଶ କରୁଅଛନ୍ତି । ଯାଏଁ, ହରିବୋଲ ! ହରିବୋଲ ! ହରିବୋଲ !

(ପ୍ରସ୍ଥାନ)

ପଞ୍ଚ ପରିବର୍ତ୍ତନ



## ଚତୁର୍ଥ ଦୃଶ୍ୟ ।

ଗୋବର୍ଦ୍ଧନ ଗିରିର ପ୍ରାନ୍ତଭାଗ ।

(ଦେବରାଜ ଇନ୍ଦ୍ରଙ୍କର ପ୍ରବେଶ)

ଇନ୍ଦ୍ର—ଚିରନ୍ତନ ଏହି ଗୋକୁଳରେ ଗୋପ, ଗୋପିନୀମାନେ ବର୍ଷ ଶେଷରେ ମୋର ପୂଜାକରି ଆସୁଥିଲେ କିନ୍ତୁ ସମ୍ପ୍ରତି ଶ୍ରୀକୃଷ୍ଣ କଥାରେ ପଡ଼ି ମୋର ସେହି ବାର୍ଷିକ ପୂଜାଟି ଲୋପ କରି ଅଛନ୍ତି, ଏହି ବ୍ୟାପାର ଏକପ୍ରକାର ମୋ ପକ୍ଷେ ଉତ୍ତମ ହୋଇଅଛି । ମୋର ମନୋବାଞ୍ଛା ପୂର୍ଣ୍ଣ କରିବାପାଇଁ ଉପଯୁକ୍ତ ଅବସର ଉପସ୍ଥିତ ହେଲା । ସମସ୍ତଙ୍କୁ ବୁଝାଗଲା ଯେ, ଶ୍ରୀକୃଷ୍ଣ ଗୋକୁଳରୁ ମୋର ପୂଜା ଲୋପ କରାଇଲେ, ମୋ ଦର୍ପ ଦେଖାଇବାର ଅଭିପ୍ରାୟରେ ଏହି କାର୍ଯ୍ୟ ପ୍ରବୃତ୍ତ ହୋଇଅଛି । ଶରାହତ ହେଲେ କେଶରୀ ଯେପରି କ୍ରୋଧ ହୋଇ ଉଠେ, ସେହିପରି ମୋର ଏହି କାର୍ଯ୍ୟରେ ପ୍ରଭୁଗେଷିତ ହୋଇ ନିଶ୍ଚୟ କିଛି ଅଲୌକିକ କାର୍ଯ୍ୟଦ୍ୱାରା ଜଗତକୁ ବିସ୍ମିତ କରିବେ । କାରଣ, ତାହାଙ୍କ ଲୀଳା ସ୍ଥାନ ଗୋକୁଳ ଓ ଭକ୍ତ ଗୋପ

ଗୋପିନୀମାନଙ୍କୁ ରକ୍ଷା କରିବାର ଉପାୟ ରଚନାକରିବେ । ଏହିସଂସାରରେ ଯେଉଁମାନେ ଅଶାନ୍ତ ଇନ୍ଦ୍ରିୟ ଗ୍ରାମକୁ ଶାସନକରି ମାୟାବନ୍ଧନ ଛିନ୍ନ ପୂର୍ବକ ଶ୍ରୀହରିଙ୍କ ପାଦପଦ୍ମକୁ ସାର କରିଛନ୍ତି; କେବଳ ସେହି ଭକ୍ତମାନଙ୍କ ଉପରେ ସର୍ବ ସଂହାରକ କାଳର କିଛି ଅଧିକାର ନାହିଁ । ଏହିସବୁ ସରଳମତି ଗୋପଗୋପୀନଗଣ ଯଦିଚ ନିଜର ଅକପଟ—ବିଶ୍ୱାସଗୁଣରେ ଓ ଦୟାସାଗର ପ୍ରଭୁଙ୍କ କୃପାରେ, କାଳର କବଳକବଳରୁ ରକ୍ଷାହୋଇଛନ୍ତି; କିନ୍ତୁ ତଥାପି ମୋର ଦୁର୍ଭେଦ୍ୟ ମାୟାଜାଲ ଛିନ୍ନକରିବା, ଏମାନଙ୍କର ସାଧ୍ୟାୟତ ନୁହେ । ସେମାନେ ନିଶ୍ଚୟ ଭୀତ ହୋଇ ପ୍ରଭୁଙ୍କ ଶରଣାପନ୍ନ ହେବେ । ଦେଖି ସେମାନଙ୍କର ନିରାପଦ ନିମନ୍ତେ ସେ କି, ଉପାୟ ଅବଲମ୍ବନ କରନ୍ତି, ତା ହେଲେ ଏହିକ୍ଷଣି ମୁଁ ମେଘମାନଙ୍କୁ ପ୍ରବଳ ରୂପରେ ବାରି ବର୍ଷଣ ନିମନ୍ତେ ଅନୁମତି ଦେବି । ସେହି ସଙ୍ଗେ ସଙ୍ଗେ ପବନ ଦେବ ମଧ୍ୟ ପ୍ରଚୁର ପରିମାଣରେ ସହାୟତା କରିବେ । ଦେଖା ଯାଉ ଗୋକୁଳ ରକ୍ଷା ନିମନ୍ତେ ସେ କି କାର୍ଯ୍ୟରେ ଅନୁଷ୍ଠାନ, କରନ୍ତି । (ମେଘମାନଙ୍କ ପ୍ରତି) ହେ ମେଘମାନେ ! ମୋ ଆଜ୍ଞା ପ୍ରମାଣେ ବୃଷ୍ଟିକର । ଯେପରି କି ବ୍ରଜପୁରୀ ବିନାଶ ପ୍ରାପ୍ତ ହୁଏ ।

## ଗୀତ ।

ରାଗିଣୀ ହିନ୍ଦୁସ୍ତାନୀ—ଝମ୍ପା ତାଳ ।

ପ୍ରବଳ ବରଷାକରି ବିନାଶନେ ବ୍ରଜପୁରୀ,
କା'ର ସାଧ ରକ୍ଷାକରେ କ୍ରୋଧ ହୋଇଲେ ମୋହରି ।।
ଆବର୍ତ୍ତ ସମ୍ବର୍ତ୍ତ ଘନ, ଆହେ ପୁଷ୍କର ଦ୍ରୋଣ,
ଯାଅ ହେ ଅତିରଖସ୍ତ ମେଘ ମାଳ ଘେରି ।।

ବରଷ ପ୍ରଳୟ ଜଳ, ବିଳମ୍ବ ନକର ଚଳ,
ଅଣଗୃଣ ପବନକୁ ସଙ୍ଗରେ ଧର ।
ହେ ପବନ ଅଣଗୁଣ, ବହ ପ୍ରଚଣ୍ଡ ବତାସ,
ଉଡ଼ାଅ ଗୋପନଗର ଯାଅ ଶୀଘ୍ର କର ।

(ସ୍ୱଗତଃ) ମୋର ଯେତେବେଳେ ଉପଯୁକ୍ତ ଅବସର ଉପସ୍ଥିତ ହୋଇଅଛି, ସେତେବେ ଆଉ ବୃଥା କାଳ ହରଣ କରିବା କର୍ତ୍ତବ୍ୟ ନୁହେ । ଏହିକ୍ଷଣି ଯହିଁରେ ମୋ ମନୋବାଞ୍ଛା ପୂର୍ଣ୍ଣହୁଏ, ତାହାର ଉଦ୍‌ଯୋଗ କରିବ । ଏବେଯାଏଁ ।

( ପ୍ରସ୍ଥାନ ).

ପଟ ପରିବର୍ତ୍ତନ ।



## ପଞ୍ଚମ ଦୃଶ୍ୟ ।

ସୂର୍ଯ୍ୟ ପୂଜା ବେଦୀ ।

( ଶ୍ରୀରାଧା, ଲଳିତା, ବିଶାଖା ପ୍ରଭୃତି ସଖିମାନଙ୍କ ପ୍ରବେଶ )

ଶ୍ରୀରାଧା—ସଖି ! ଏତେବେଳଯାଏଁ ମୋ ହୃଦୟନାଥ ଦର୍ଶନ ଦେଲେ ନାହିଁ କାହିଁକି ? ସବୁଦିନେ ଏ ସୂର୍ଯ୍ୟକୁଣ୍ଡ ନିକଟ କଦମ୍ବ ମୂଳରେ ବସି ବଂଶୀ ବଜାଉ ଥାଆନ୍ତି, ବୃନ୍ଦାବନଚନ୍ଦ୍ରଙ୍କର ଆଜି ତାହା ଭାବାନ୍ତର କାହିଁକି ସଖି ?

ଲଳିତା - ବିନୋଦିନ ! ତୁମ୍ଭେ ଯେତ ଯେତ ତାଙ୍କୁ ଦେଖିବା ପାଇଁ ଚାତକିଣୀ ପରି ଉତ୍କଣ୍ଠିତା ହେଉ ଥାଅ କିନା, ଆଜି ବିନୋଦ ନାଗର ହଠ କରି ତୁମ୍ଭର ମନ ପରୀକ୍ଷା କରିବା କାରଣ କେଉଁଠାରେ ଲୁଚି ରହିଥିବେ ।

ବିଶାଖା – ଆଗୋ ! ହୃଟିଆ ନାଗରଙ୍କର ହଟଲଗା, ଠାରୁ ନଖ ଲଗା ପର୍ଯ୍ୟନ୍ତ ଆବରଣ୍ଠିତ ଅଛି, କେ ଜାଣେ ଆଜ କେଉଁ ଭଙ୍ଗୀର କରିଛନ୍ତି ।

ବୃନ୍ଦା—ବିଶାଖେ ! ଏହା କହିବା ତୁମ୍ଭର ବଡ଼ ଅନ୍ୟାୟ, ରସିକନାଗର ରାଧା ପ୍ରେମ ସାଗରଙ୍କ ମନରେ ଏ ଭାବ କେବେଁ ଉଦୟ ହେବନାହିଁ, ଜାଣିଛତ ସମସ୍ତେ ସମସ୍ତେ ଗୋଷ୍ଠରୁ ସଖାମାନଙ୍କ ସଙ୍ଗ ଛାଡ଼ି ଏକାକି ବୃନ୍ଦାବନଯାକ ଜୟରାଧେ ଜୟରାଧେ ବୋଲି ବଂଶୀ ବଜାଇ ପାଗଳପରି ବୁଲୁଥାଆନ୍ତି, ଯେଣୁ ଶ୍ରୀ ରାଧାଙ୍କ ସୂର୍ଯ୍ୟ ପୂଜା ସମୟରେ ନୟନମିଳନ ଓ ମଧୁର ମିଳନ ଯୋଗ ଘଟିବ, ଏଥି ଯୋଗୁ ଏହି ସୂର୍ଯ୍ୟକୁଣ୍ଡ ତୀରଟି ତାଙ୍କର ଅତି ପ୍ରିୟକର ସ୍ଥାନ ହୋଇଅଛି, ଯେଉଁ ଠାରେ ଥିଲେ ମଧ୍ୟ ସୂର୍ଯ୍ୟପୂଜା ସମୟକୁ ନିଶ୍ଚୟ ଆସି ପହୁଞ୍ଚି ଯାଆନ୍ତି ; ଏହା କଣ ତୁମ୍ଭେମାନେ ଅନୁଭବ କରନାହିଁ ? ମୋତେ ବୋଧ ହେଉଛି ଅଜ ଶ୍ୟାମସୁନ୍ଦରଙ୍କର ଖେଳାଲୀଳାରେ ସଖ୍ୟ ଭାବ ବୃଦ୍ଧି ହୋଇଅଛି, ତେଣୁ ଏତେ ବିଳମ୍ବ ।

ଶ୍ରୀରାଧା—ବୃନ୍ଦେ ! ତୁମ୍ଭେ ଯାହାକହୁଛ ମିଛ ନୁହେ, କିନ୍ତୁ ଜୀବନ ସଙ୍ଗୀନି ମୋର ମୋତେ ଆଜ ଦର୍ଶନ ଦେଲାପରି ଲାଗୁନାହିଁ । ସେ କାଲି କେଶରକୁଞ୍ଜ ଶଯ୍ୟାରେ ମୋ ଆଗେ କହିଥିଲେ, ପ୍ରାଣାଧିକେ ! ଏଥି ମଧ୍ୟରେ ମୁଁ ଗୋଟିଏ ଐଶ୍ୱର୍ଯ୍ୟଲୀଳା ଦେଖାଇବି, ତହୁଁ ମୁଁ କହିଲି, ପ୍ରାଣନାଥ ! କେଉଁ ଐଶ୍ୱର୍ଯ୍ୟଲୀଳା ଦେଖାଇବାକୁ ବସିଛ ? ସେ କହିଲେ ଲୋକମାନେ ଯାହା ଦେଖିଲେ ଅତି ଆଶ୍ଚର୍ଯ୍ୟ ହେବେ ସେହି ଲୀଳାଟି ପ୍ରକାଶ କରିବି, ମୁଁ କରୁଣ କଣ୍ଠରେ ପଚାରିଲି, ଜୀବନବଲ୍ଲଭ ! ଦୁଷ୍ଟ କାଳି ନାଗକୁ ଦଳିଲାପରି ତ ନୁହେ ? ତହୁଁ କଳାକାନ୍ତ କହିଲେ ତାହାଅପେକ୍ଷା

ଗୁରୁତର କାର୍ଯ୍ୟ, ସଖି ! ତାଙ୍କ ଶ୍ରୀମୁଖରୁ ଏ କଥାଶୁଣି ମୁଁ ବାରଂବାର ବିନୟ କରି କହିଲି, ପ୍ରାଣପ୍ରଭୁ ! ତୁମ୍ଭକଥା ଶୁଣି ମୋ ମନରେ ବଡ଼ ସନ୍ଦେହ ଜାତ ହେଉଛି, ମୋତେ ସବିସ୍ତ ଫିଟେଇ ତାହା ପ୍ରକାଶ କର । ବଂଶୀଧାରି ମୋର କାତର ଭାବ ଦେଖି ମୋତେ ଦମ୍ଭ ଦେଇ କହିଲେ ପ୍ରିୟେ କିଛି ଚିନ୍ତା କରନା, କାଲି ଦେବରାଜ ଇନ୍ଦ୍ର ମୋଉପରେ ରାଗାନ୍ୱିତ ହୋଇ ଘୋର ଝଡ଼ ତୋଫାନ ସହିତ ପ୍ରଳୟ ବରଷା କରିବ, ଯହିଁରେକି ଗୋକୁଳପୁରୀ ଧ୍ୱଂସ ପ୍ରାପ୍ତହୋଇ ପାରେ, ସେଥି ନିମନ୍ତେ ଗୋବର୍ଦ୍ଧନ ଗିରିକି ବାମକର କନିଷ୍ଠ ଅଙ୍ଗୁଳିରେ ଧାରଣ କରିବି । ବୃନ୍ଦେଗୋ ! ସତେ ପ୍ରାଣନାଥ ମୋର ଏପରି ଅଲୌକିକ ଘଟନା ଦେଖାଇବେ, ସଖି, ଯେଉଁ ମୃଦୁମନ୍ଦ କରପଦ୍ମ ଲବଣୀଠାରୁ କୋମଳ-ତର, ଗୋପ ସଙ୍ଖାଳି ସେହି ଶ୍ରୀହସ୍ତରେ ଏତେବଡ଼ ଗୋବର୍ଦ୍ଧନ ପର୍ବତକୁ କିପରି ଧରିପାରିବେ ? ଆହା ! ଶ୍ୟାମଚନ୍ଦ୍ରଙ୍କ ସୁକୋମଳ କରପଦ୍ମକୁ କି ବ୍ୟଥା ନ ହେବ ? ସଖିଗଣ ! ଆଜ ରଙ୍କନିଧି ମୋର ଏଠାକୁ ଅସିବାମାତ୍ରେ ତୁମ୍ଭେ ସମସ୍ତେ ମୋଲାଗି ତାଙ୍କୁ ହାତଧରି ଜଣାଇବ । ଯେପରିକି ଗୋବର୍ଦ୍ଧନ ଗିରିକି ଧାରଣ କରିବାକୁ ସାହାସ ନ କରିବେ । ମୁଁ ତୁମ୍ଭମାନଙ୍କୁ ମୋରାଣ ଦେଇ କହୁଛି, ସଖି ଏ ଅଭାଗିନୀ କଥା ଭୁଲିବ ନାହିଁଟି ?

ବୃନ୍ଦା—କିଶୋରମଣି ! ତୁମ୍ଭେ କଅଣ ପାଗଳିଣୀ ହେଲ ? ଶ୍ରୀକୃଷ୍ଣ ଚନ୍ଦ୍ରଙ୍କୁ ତୁମ୍ଭେ କଅଣ ବୋଲି ମନେ କରିଛ କିଗୋ ! ସେ ପରା ତ୍ରିଭୁବନ ମୋହନ, କୋଟି କୋଟି ବ୍ରହ୍ମାଣ୍ଡ ଯାହାଙ୍କ ଲୋମମୂଳମାନଙ୍କରେ ଗୁନ୍ଥା ହୋଇଅଛି ତାଙ୍କ ପକ୍ଷେ ଗୋବର୍ଦ୍ଧନଗିରି ଧାରଣ କରିବା କି ଆଶ୍ଚର୍ଯ୍ୟ କହିଲଭଲା ? ସବୁଧ ! କିଛି ଅନ୍ୟମନେ କରନା, କୁଞ୍ଜ-

ଶ୍ରୀମାଧବଙ୍କର କ୍ଷମତାଅଛି, ସେ ଏକନିମିଷକେ ଦଣ୍ଡା ଗୋବର୍ଦ୍ଧନ ପର୍ବତ ଉଠାଇ ପାରନ୍ତି, ତୁମ୍ଭେ ଏଥିପାଇଁ କାତରତା ଅନୁଭବ କରୁଛ କାହିଁକି ସଖି, ଧୈର୍ଯ୍ୟଧର, ନୀଳମଣି ଏ ବ୍ରଜମଣ୍ଡଳରେ ଯେତେ ଯେତେ କାର୍ଯ୍ୟ ସାଧନ କରୁଛନ୍ତି ସବୁ ମଙ୍ଗଳ ନିମନ୍ତେ, ମଙ୍ଗଳମୟ ଶ୍ରୀକୃଷ୍ଣ କେବେହେଁ ଅମଙ୍ଗଳକାର୍ଯ୍ୟ କରିବେନାହିଁ, ବୋଧହୁଏ ବ୍ରଜ ପୁରୀର ମଙ୍ଗଳ କାମନାରେ ଏ ଦୁଃସାଧ୍ୟ କାର୍ଯ୍ୟଟି କରିବେ ବୋଲି ଇଚ୍ଛା କରିଅଛନ୍ତି, ଏଥିଲାଗି ତୁମ୍ଭେ ଶୋକାକୁଳ ଓ ଚିନ୍ତାନ୍ୱିତା ହେବା ଉଚିତ ନୁହେ, ଧୈର୍ଯ୍ୟଧର । ଏବେ ତାଙ୍କ ନାମରେ ସମସ୍ତେ ଗୋଟିଏ ଜୟ ଗୀତିକା ଗାନ କର ।

## ଗୀତ ।

(ଗୋଷ୍ଠ ହତେ ଆଇଲ ନନ୍ଦଦୁଲାଲ ସୁରେ)

ଭଜଗୋ ! ବରଜରାଜ କୁଞ୍ଜବିହାରୀ ।
ବ୍ରଜକିଶୋର ମୁରଲୀଧର, କିଶୋରୀମନୋହାରୀ । ଘୋଷା ।

ନାଚୁଥା ନଟନଗତି, ପ୍ରୀତି ମୂରତି ଯଶୋଦା ନେତ୍ର ସମ୍ପତ୍ତି, ପରମାନନ୍ଦେ ଆଜ ଗାଇ ତାଙ୍କ ଯଶ ଗୀତି ଲଭିବା ଭକତି ମୁକତି । ଜୟ ମଧୁସୂଦନ ଗୋପୀମନମୋହନ କୁଞ୍ଜକାନନବିହାରୀ ପରମାନନ୍ଦ ନନ୍ଦହେ ମାଧବ ଗିରିଧାରୀ ମୁକୁନ୍ଦ ମୁରାରି । ଗାଅ ଗାଅ ଗୋ ଅଳି ବ୍ରଜକିଶୋରଙ୍କ ଯଶକୀରତି, ପ୍ରେମେମାତି, ଗାଅ ଗୋ ଅଳି, ଅନୁରାଗେ ତାଙ୍କ ଲଭିବେ ମୁକ୍ତି । ସଖିଗଣ ! ଶ୍ୟାମ ନାମକୁ ଭଜ ॥ ଭଜ ଗୋ ବରଜରାଜ । ଇତ୍ୟାଦି ।

(ସମସ୍ତରେ ଗାନ ଓ ନୃତ୍ୟ)

(ଯବନିକା ପତନ)

ପ୍ରଥମ ଅଙ୍କ ସମ୍ପୂର୍ଣ୍ଣ



# ଦ୍ୱିତୀୟ ଅଙ୍କ ।

## ପ୍ରଥମ ଦୃଶ୍ୟ—ଗୋକୁଳ ପଥ ।

(ନନ୍ଦ, ଉପନନ୍ଦ ପ୍ରଭୃତ ଗୋପମାନଙ୍କ ପ୍ରବେଶ ।)

ନନ୍ଦ—ଭାଇମାନେ ! ଆଜକ ଦୁଇଦନ ହେଲା ବୃଷ୍ଟି କମେ କମେ ପ୍ରବଳ ହେଉଅଛୁ, ବୋଧହୁଏ ଏହାପରେ ଝଡ଼ ତୋଫାନ କିଛୁ ଧନ କରବ, କହିଲ ଭାଇ କପର ଗୋରୁ-ମାନଙ୍କୁ ବନମଧ୍ୟରେ ରଖିବା ? ଏତବଡ଼ ବଷମସଙ୍କଟ ହେଲା ।

ଉପ—ଭାଇ ! ମୋତେ ଆସି ଏତେ ବୟସ ହେଲା, କିନ୍ତୁ ଏପର ବଚଣ ବ୍ୟାପାର କେବେ ଦେଖି ନାହିଁ । ଯେପର ଗତ ଦେଖା ଯାଉଛୁ, ବୋଧହୁଏ ପୃଥିବୀ ଆଜ ରସାତଳ ହୋଇ ଯିବ ।

ସୁନନ୍ଦ—ଏଥିରେ ଆଉ ସନ୍ଦେହ କଅଣ ? ଯେ ପ୍ରକାର ଝଡ଼ ବୃଷ୍ଟି ହେଉଛୁ, ବୋଧହୁଏ ଅଲ୍ପକ୍ଷଣ ମଧ୍ୟରେ ଏହ ଗୋଲୋକଧାମଗୋକୁଳପୁରୀ ଧ୍ୱଂସମୁଖରେ ଉପନୀତ ହେବ । ଏଥିମଧ୍ୟରେ ଗୃହବଳଙ୍କୁ ଘରଦ୍ୱାର ଭାଙ୍ଗିପଡ଼ିବାକୁ ଆରମ୍ଭ ହେଲାଣି, କେତେକ ଘର ମଧ୍ୟ ଭାଙ୍ଗିଗଲାଣି, ଆର୍ତ୍ତସ୍ୱ ଲୋକଙ୍କ ଆର୍ତ୍ତନାଦରେ ଚତୁର୍ଦ୍ଦିଗ ପ୍ରତଧ୍ୱନତ ହେଉଅଛୁ, ମୁଁ ଜାଣିପାରୁଛୁ ଆଜ ଆମ୍ଭେ ସମସ୍ତେ ଅକାଳେ କାଳକ-ବଳରେ ନୀତ ହେବାକୁ ହେବ ।

ନନ୍ଦ—ବଧାତା ଯେ ଅକାଳରେ ଅଦନରେ ଏପର ପ୍ରଳୟ କରବ, ତାହା କିଛୁ ମାତ୍ର ଜଣାଯାଉନାହିଁ, ତେବେ କାହିଁକ ଆଜ ହଠାତ୍ ଏଭଳିଆ ବୃଷ୍ଟି ଆଣର ଉପକ୍ରମ ହେଲା । ଆଉ ଅଲ୍ପକ୍ଷଣ ଏହାପରେ ଦୁର୍ଯୋଗ ହେଲେ ଏ ବ୍ରଜମଣ୍ଡଳରେ ଜଣେ ହେଲେ ପ୍ରାଣଧର ରହୁପାରବନାହିଁ,

ଏ ଘଟନା ଦେଖି ମୋତେ ବୋଧ ହେଉଛି ଯେ, ଆମ୍ଭେମାନେ କେଉଁ ଦେବତାର କୋପାନଳରେ ପଡ଼ିଅଛେଇଁ ସେଥିଲାଗି ଏ ମହା ବିପଦ ଘଟିଛି, ଏବେ ଆମ୍ଭେମାନେ ଯେ କି ଉପାୟ କରିବା, କି ପ୍ରକାରେ ସପରିବାରରେ ପ୍ରାଣଧାରଣ କରିବା ତାହା କିଛି ସ୍ଥିରକରି ପାରୁନାହିଁ । ହେ ଭଗବାନ ! ହେଦୟାମୟ ! ମଧୁସୂଦନ ! ଏ ବିପଦରୁ ରକ୍ଷାକର ।

ଉପନନ୍ଦ—ଗୋପରାଜ ! ଆସନ୍ତୁ ଆସନ୍ତୁ, ଘର ଭିତରକୁ ଶୀଘ୍ର ଗମନ କରନ୍ତୁ, ଏହି ଦେଖନ୍ତୁ ଘନ ଘନ ବିଜୁଳି ମାରି କପରି ଘୋର ବୃଷ୍ଟି ମାଡ଼ି ଆସିଲାଣି ।

ନନ୍ଦ—ଚାଲ ଭାଇ ! ଚାଲ, ଭଗବାନଙ୍କ ନାମ ସ୍ମରଣ କର, ଉଚ୍ଚସ୍ୱରରେ ଶ୍ରୀହରିଙ୍କ ନାମ ଗାଇ ଗାଇ ଚାଲ, ଶୀଘ୍ର ଚାଲ ।

ସମସ୍ତେ—ହେ ଶ୍ରୀହରି ! ହେ ଶ୍ରୀହରି ! ଏ ମହା ବିପଦରୁ ରକ୍ଷା କର ।

## ଗୀତ ।

କୀର୍ତ୍ତନସ୍ୱର ।

ହେ ଶ୍ରୀହରି ଦୟାମୟ କରୁଣା ନିଧାନ,
ଭକତବତ୍ସଳ ପ୍ରଭୁ ପତିତ ପାବନ,
ରକ୍ଷାକର ଦୀନବନ୍ଧୁ ଗୋଲୋକ ବିହାରୀ,
ଅନାଥ ଗୋପାଳ କୁଳ ଯାଉଅଛୁଁ ମରି ।
ତୁମ୍ଭେ ନ ରଖିଲେ ପ୍ରଭୁ ଆଉ ନାହିଁ ଗତି,
ଜଗତ ଜୀବନ ହେ ଜଗତ ଜନ ପତି

( ତାରେ ରକ୍ଷା କର ହେ )
( ଅନାଥର ନାଥ ତାରେ ରକ୍ଷା କର ହେ )

ଅଧମ ଚାରଣ ମାନ ଉଚ୍ଚାରଣ;—
('ରକ୍ଷା କର ହେ )।
[ଗାଇ ଗାଇ ସମସ୍ତଙ୍କର ପ୍ରସ୍ଥାନ]
ପଟ୍ଟ ପରିବର୍ତ୍ତନ



## ଦ୍ୱିତୀୟ ଦୃଶ୍ୟ—ଗୋକୁଳପୁରୀ ।

( ଅନ୍ତଃପୁରରେ ଯଶୋଦାରାଣୀ ଓ ଅନ୍ୟାନ୍ୟ ଗୋପାଙ୍ଗନାଗଣ )

କମଳା—ଅଗୋ ନନ୍ଦରାଣି ! ଏ ବରଷାତ କେବେ ଦେଖା ନ ଥିଲ ? ଦେଖୁଛ, ବେଳକୁବେଳ ଅତିଶୟ ପ୍ରବଳ ହୋଇ ଝଡ଼ ବତାଶ, ହେଉଛି, ଆଜ କଣ ଏ ଗୋପପୁରୀକୁ ରଖିବ ନାହିଁ କି ଗୋ ?

ଯଶୋଦା—ଆଗୋ କମଳେ ! ଏ ବୃଷ୍ଟି ଦେଖି ମୋତେ ବଡ଼ ଭୟ ହେଉଛି, ମା ! ସର୍ବମଙ୍ଗଳେ, ଏ ମହା ଘୋର ବିପ-ତ୍ତିରେ କାହିଁକି ପକାଇ ଦେଉଛୁ ମା ! ମାଗୋ ! ଦୁର୍ଗତି ନାଶିନୀ ଦୁର୍ଗେ; ମା ଜଗଦମ୍ବେ, ! ମା ଅମ୍ବିକେ ! ରକ୍ଷାକର ରକ୍ଷାକର !! ନୋହିଲେ ଆଉ ଗତି ନାହିଁ । (ଦାସୀପ୍ରତି) କମଳା ଗୋ ! ଏବେ କି, ଉପାୟ କରିବାକି ?

କମଳା—ମହାଦେଇ ! ମୋତେ ଏଥିକି କିଛି ବୁଦ୍ଧି ବାଟ ଦିଶୁ-ନାହିଁ ତ ?

ବିମଳା—ଆଗୋ ! ବୁଦ୍ଧି ବାଟ କଅଣ ଦିଶିବ ବୋଲି କହୁଛ ? ଏ କେଉଁ ଦେବତାର କୁଟ ହୋଇଛି, ତା, ନୋହିଲେ କେବେ ଯାହା ଆଖି ଦେଖି ନ ଥିଲୁ, ଏପରି ବରଷା କାହିଁ ହୁଅନ୍ତା ? ,

ଯଶୋଦା—ହାହାରେ ଗୋ ! ଏ ତୁଚ୍ଛଘର ବାଡ଼ ଭସି ଯାଉ ପଛକେ, ତହିଁରେ ବିଶେଷ କ୍ଷତି ନାହିଁ; କିନ୍ତୁ କି ପ୍ରକାରେ ଆମ୍ଭେମାନେ ପ୍ରାଣରକ୍ଷା କରିବା ଏହି ଚିନ୍ତା ହିଁ ମହାଚିନ୍ତା । ପୁଣି ମୋ ନୀଳମଣିଟି ଯେ ଏ ବିପଦ ସମ-ୟରେ ମୋ କୋଳରେ ନାହିଁ, ସଖାମାନଙ୍କ ସଙ୍ଗେ ଗାଈ ଚରାଇବାକୁ ବନକୁ ଯାଇଛି, ଆହା ! ସେ ତ ମୋର ଆଦରର ଧନ, ଅନ୍ଧର ଲଉଡ଼ି, ଗଣ୍ଠି ସଙ୍ଖାଳି, ସେ ତ ମୋର ନୟନ ପୁତଳି, ଗଳା ରତ୍ନମାଳ, ଏ ବରଷାରେ କିପରି ବନ ମଧ୍ୟରେ ରହିଥିବଟି ? ହାହାରେ ଗୋ ! ମୁଁ କି ବୁଦ୍ଧି କରିବି କହିଦେଲ ହେଲେ ? ମୁଁ ଏଭଳି ଘୋର ବିପଦରେ କିପରି ନୀଳମଣିକି ବଞ୍ଚାଇବି ? ମୋର ଏ ଶରୀର ପ୍ରାଣ ପ୍ରତି ଲେଶ ମାତ୍ର ମମତା ନାହିଁ, ମରିବାକୁ ମୋର ଭୟ ନାହିଁ, କେବଳ ମୋ କଳାମାଣିକ କିପରି ରହିବ ଏହି ଭାବନା ଭାବି ଭାବି ପ୍ରାଣ ବଡ଼ ଆକୁଳିତ ହେଉଛି । ମା ! ତ୍ରିପୁର ସୁନ୍ଦରୀ ! ମା ! ସର୍ବମଙ୍ଗଳେ ! ମା ! ଚଣ୍ଡିକେ ! ଏ ମହା ବିପଦ କାଳରେ ଦାସୀ ତୋର ପବିତ୍ର ପାଦ-ପଦ୍ମରେ ଶରଣାପନ୍ନ ହେଉଛି, ମାଇଗୋ ! କୃପାମୟି ! କୃପାକରି ଏହି ମହା ବିପଦରୁ ରକ୍ଷାକର, ମୋ ନୀଳମଣିକି ଘଣ୍ଟ ଘୋଡ଼େଇ ରଖ ମା ! ତୋ ବିନା ଏ ଦାସୀର ଆଉ କିଛି ସହାୟ ସମ୍ପତ୍ତି ନାହିଁ, ମାଗୋ ! ମୁଁ ଅନେକ ଆରାଧନା କରି ଅମୂଲ୍ୟରତ୍ନ ନୀଳମଣିକି ପାଇଛି, ଆଜି ଏହି ମହାସଙ୍କଟରୁ ମୋ କୃଷ୍ଣଚନ୍ଦ୍ରକୁ ରକ୍ଷାକର ମା ! ତୋର ଦୟା ହେଲେ ମହାସମୁଦ୍ର ଗୋଷ୍ପଦରେ ପରିଣତ ହୁଏ, ସୁତରାଂ ଆମମାନଙ୍କର ଏ ଘୋର ବିପଦକୁ ବିନାଶକରିବା ତୋ ପକ୍ଷରେ ସାମାନ୍ୟ ମାତ୍ର । ମାଗୋ ଏ ବିପଦ ଘାଟରେ ପଡ଼ି ତୋର ଅଭୟ ପାଦପଦ୍ମ ତଳେ ଶରଣ ନେଲି, ତୋର ଦୟାମୟୀ ନାମରେ ଯେପରି କଳଙ୍କ ନ ରହେ ।

### ସ୍ତୁତି ।

(ରାଗିଣୀ ବସନ୍ତ ବାହାର—ତାଳ ଠେକା)

କାତରେ ଏ କିଙ୍କରୀରେ କର କରୁଣା,
ମାଗୋ ! ତ୍ରିତାପ ନାଶିନୀ ମା ! ତ୍ରିନୟନା ।।

ଦକ୍ଷସୁତା ଦାକ୍ଷାୟଣୀ, ଦାନବଦଳ ଦଳନୀ,
ଦୂର୍ଗେ ଦୁର୍ଗତି ନାଶିନୀ ଦେ ନୋ କୃପାକଣା ୧ ।

ପଡ଼ିଛୁ ଘୋର ସଙ୍କଟ, ଦିଶୁନାହିଁ ବୁଦ୍ଧି ବାଟ,
ରକ୍ଷାକରିବାକୁ ଆଉ ନାହିଁ କେ ତୋ ବିନା ।। ୨ ।

(ସ୍ତୁତି ଗାଇ ଗାଇ ଅନ୍ତଃପୁର ଭିତରକୁ ପ୍ରସ୍ଥାନ)

ପଟପରିବର୍ତ୍ତନ ।



### ତୃତୀୟ ଦୃଶ୍ୟ—ବନପଥ ।

( ଦୁଇଜଣ ଗୋପାଳଙ୍କ ପ୍ରବେଶ )

### ଗୀତ ।

ନବ ବସନ୍ତ ସମୟ ବୁଝେ ।

ଭାଇ ଏ କି ଅସମ୍ଭବ ।
ଆଜ ଗୋପପୁର କି ରହିବ ରେ । ପଦ ।

ଗୋଠ ବୃନ୍ଦାବନ ସୀମା ଆଦ୍ୟନ୍ତ
ଘୋଟିଛି ମେଘ ଅନ୍ଧାର ହେ ।
ବହୁଛି ପବନ ବରଷୁଛି ଘନ
ଯେସନେ ପ୍ରଳୟ ପାର ହେ ।୧ ।

ଝାଡ ଝାଙ୍କ ଝାଙ୍କ, ବନ୍ଧୁ ଝାଙ୍କ ଝାଙ୍କ,
ଘଡଘଡ଼ ଚଡ଼ଚଡ଼ ହେ ।
ଅତି ଉତପାତ, ପତଇ ନିର୍ଘାତ,
ଘନ ଘନ ଘଡ଼ଘଡ଼ ହେ । ୨ ।

କରଣ ତର୍ଜ୍ଜନ, ଘୋର ଗରଜନ,
ଜଳ ସଙ୍ଗେ ଶିଳ ବୃଷ୍ଟି ହେ ।
ଘୁମୁ ଘୁମୁ ଧ୍ୱନି, ଦୁମ୍ ଦୁମ୍ ମେଦିନୀ,
ଅନେକ ହେଲା ଅରିଷ୍ଟି ହେ । ୩ ।

ପ୍ରଥମ ଗୋପାଳ—ଭାଇ ! ପଳାଇ ଆସ, ପଳାଇ ଆସ, ଏ ଯେଉଁ ଅଗ୍ନିକଣ ବୃଷ୍ଟି ହେଉଅଛି ଅନାୟାସରେ ପ୍ରାଣ ବାହାରି ଯିବ, ଶୀଘ୍ର ପଳାଇ ଆସ, ଆପଣା ଆପଣା ଘରମାନଙ୍କରେ ହେଲେ ରହିଯିବା ।

ଦ୍ୱିତୀୟ ଗୋପାଳ—ଆରେ ଭାଇ ! କୁଆଡ଼େ ପଳେଇ ପଶିବା କହିଲୁ ? ଶୁଣିନୁ ନା ? ଗୋପପୁର କେଉଁଣେ କଅଣ ହେଲାଣି ?

ପ୍ରଥମ ଗୋପାଳ—ନା, ରେ ଭାଇ ! ମୁଁ ଶୁଣି ନାହିଁ, ଘଟଣାଟା କଅଣ କହିଲୁ ଭାଇ ?

ଦ୍ୱିତୀୟ ଗୋପାଳ—ତେବେ ଶୁଣୁ ! ପୁରୁଷି କେଦେବସ, ଅଷ୍ଟ ହାଟ ଦେବଦେବ କଅଣ କହୁଛନ୍ତି, ଶୁଣୁ ।

( ତୃତୀୟ ଓ ଚତୁର୍ଥ ଗୋପାଳ ଦୁହିଙ୍କ ଗାନ )

## ଗୀତ ।

ବସନ୍ତ ସ୍ୱର ।

ଭାଇ ଆନ୍ଦ କି ବର୍ଷା ।
କହ କାହିଁ ପଳାଇ ପଶିବା ରେ । ପଦ ।

ନନ୍ଦର ମହଲ ଗୋବର୍ଦ୍ଧନ ମଲ୍ଲ
ମଧିର ପଡ଼ିଲା ଟଳି ହେ ।

ଭୁଜଙ୍ଗ ଅଞ୍ଚଳ ବୃକ୍ଷମାନେ ଭଙ୍ଗ,
ଉଡ଼ଅଛୁ ଢାଲଢୋଲ ହେ । ୧ ।

କର ହମ୍ବାରବ, ଶୃଙ୍ଗ ପୋତ ଗାବ,
ପଳାଇଲେ ଏଣେ ତେଣେ ହେ ।
ଉଠୁଅଛୁ କୋହ, ରହୁନାହିଁ ଲୁହ,
ଆମ୍ଭର ନୟନ କୋଣେ ହେ । ୨ ।

କଏ କେଉଁ ଆଡ଼େ ପଳାଇ ଗଲେଣି
ଗୋପପୁର ହତଶିରୀ ହେ ।
ଠାବେ ଠାବେ ବସି ରଡ଼ି ଛାଡୁଛନ୍ତି,
ବୃଦ୍ଧା ଯୁବା ଯେତେ ନାରୀ ହେ । ୩ ।

୧ମ ଗୋପାଳ—ଭାଇ ! ଯ୍ୟା କଅଣ ସତ ?

୩ୟ ଗୋପାଳ—ଆରେ ଭାଇ ! ଚାଲ ଗୋପ ପୁରକୁ ଗଲେ ସବୁ ଦେଖିବ ଚାଲ, ଶୀଘ୍ର ଚାଲ ।

( ସମସ୍ତଙ୍କ ପ୍ରସ୍ଥାନ )

ଦୃଶ୍ୟ ପରିବର୍ତ୍ତନ



## ଚତୁର୍ଥ ଦୃଶ୍ୟ—ବୃନ୍ଦାବନ

( ଶ୍ରୀକୃଷ୍ଣ, ବଳରାମ ଓ ସଖାଗଣ )

ବଳରାମ—କାହ୍ନୁ ! ଏ ଭଳିଆ ବୃଷ୍ଟି ତ କେବେ ଦେଖା ନ ଥିଲା, ଦେଖ ଭାଇ ! କପାଳ ବେଳକୁ ବେଳ ଅଗ୍ନିକ ବଢ଼ି ହେଉଅଛି, ଆଜି ଏ ବନ ମଧ୍ୟରେ ରହି ପାରିବା ନାହିଁ, ଚାଲ ସମସ୍ତେ ଘରମାନଙ୍କୁ ବାହୁଡ଼ି ଯିବା ।

ଶ୍ରୀକୃଷ୍ଣ—ଭାଇ !, ତୁମେ ଏଡ଼େ ଭୟକରୁଛ କାହିଁକି ? ଗ୍ରୁର ମେଘ ବରଷାଟା ଆମର କଅଣ କରି ପାରିବ, ତା' ଗ୍ରୁଏଁ ବନ୍ଦ ହୋଇ ଯିବ, କାତର ହୁଅନା ।

ସୁବଳ—ଭାଇହୋ ! ଏଇ କର୍ପୂର ବେଟହେବ କାହିଁକି କାନ୍ଦକାନ୍ଦ ଏତେଣ ଆସୁଚି ଦେଖନ୍ତ ?

(କାନ୍ଦ କାନ୍ଦ କର୍ପୂରର ପ୍ରବେଶ)

ଶ୍ରୀକୃଷ୍ଣ—କିରେ କର୍ପୂର ! କାହିଁକି ଏପରି ଅଧୈର୍ଯ୍ୟ ହୋଇ କାନ୍ଦ ଲାଗିଚୁ ? କଥା କଅଣ କହ ।

କର୍ପୂର—ଉଁ, ହଁ, ଉଁ, କହିଲା ବେଳକୁ ମୋ ପାଟିରୁ କଥା ବାହାରୁ ନାହିଁ, ଖନଲାଗି ଯାଉଚି, ଉଁ, ଉଁ, ଉଁ ।

ଶ୍ରୀକୃଷ୍ଣ—ଆରେ ଦମ୍ଭଧର, ଏପରି ହେଲେ କଅଣ ହେବ ? କଥାଟା କଅଣ, ଗୋପ ପୁରର ହାଲ କଅଣ କହ ।

କର୍ପୂର—ମୋତେ ନନ୍ଦରାଣୀ ପଠେଇଛନ୍ତି, ବେଗେ ପଳେଇଆସ, ଆଜି ଗୋପପୁର ହୋଇ ନାହିଁ, ଗୋକୁଳ ସମ୍ପତ୍ତି ସବୁ ସରିଗଲା, ହେଇ ସବୁ ସରିଗଲା, ଗଲ ଦେଖିବ ଚଞ୍ଚଳ ଆସ ।

ବଳରାମ—କାହ୍ନୁ ! ଚାଲ ଚାଲ, କଅଣ ହେଲା ଦେଖିବା, ଗୋପକୁ ଚାଲ ଭାଇ ।

ଶ୍ରୀକୃଷ୍ଣ—ଭାଇ ! କିଛି ଚିନ୍ତାକରନା, ଗ୍ରୁର ମେଘ ବରଷାଟା ହୋଇ ଗୋପପୁରର କଅଣ ଅନିଷ୍ଟ କରିପାରିବ ? ଦମ୍ଭଧର, ମୁଁ ଏହାର ପ୍ରତିକାର କରିବି । (କର୍ପୂର ପ୍ରତି) ଆରେ କର୍ପୂର, ଯା ଯା, ମାଆଙ୍କୁ କହିବୁ, କିଛି ଚିନ୍ତା କରନ୍ତେ ନାହିଁ । ଅଧୀର ନ ହୋଇ ଆନନ୍ଦରେ ଥାଆନ୍ତୁ, ମୁଁ ସଖାମାନଙ୍କ ସଙ୍ଗେ ଏହି କ୍ଷଣ ମଧ୍ୟରେ ଯାଉଛି । ମୋ ସଙ୍ଗରେ

ବଳୀ ଭାଇ ଯେତେବେଳେ ଅଛନ୍ତି, ମୋର ଡର ଭୟ କଅଣ ? ଯା ମାଙ୍କୁ ବୁଝେଇ, ସୁଝେଇ କହିବୁ ଯା ।

କଣ୍ଡୁର—ତେବେ ମୁଁ ଯାଉଚି ।

(ପ୍ରସ୍ଥାନ)

ଶ୍ରୀକୃଷ୍ଣ—ସଖାଗଣ, ଆମ୍ଭେମାନେ ଆସ ଭାଇ ବାଛୁରୀମାନଙ୍କୁ ଘେନି ଗୋବର୍ଦ୍ଧନଗିରି ଆଡ଼େ ଯିବା ।

ସୁବଳ—ହିଁ, ଚାଲ ଭାଇ ଚାଲ ।

(ଗୀତ ସହ ସମସ୍ତଙ୍କ ପ୍ରସ୍ଥାନ)

ଦୃଶ୍ୟ ପରିବର୍ତ୍ତନ ।



## ପଞ୍ଚମ ଦୃଶ୍ୟ ।

(ଗୋପ ଗୃହ ଭୁବନ ।)

(କାତରଭାବେ ନନ୍ଦ, ଉପନନ୍ଦ, ସୁନନ୍ଦ ପ୍ରଭୃତି ଗୋପମାନଙ୍କ ପ୍ରବେଶ)

ନନ୍ଦ—ହାୟ ! ହାୟ ! ଏବେ କଉପାୟ, ଜାଣୁଅଛୁ ଇନ୍ଦ୍ର କୋପେ ଏହି ବ୍ରଜପୁରୀ, ଧ୍ୱଂସ ହୋଇଯିବ ନିଶ୍ଚେ; କାହିଁ ଗଲୁ ପ୍ରାଣାଧିକ କୃଷ୍ଣରେ ମୋହର, ଏ ଘୋର ବିପଦେ ଆସି କର ପରିତ୍ରାଣ, ଭୀତ ତ୍ରସ୍ତ ହୋଇଲେଣି ସବୁ ଗୋପଗଣ ।

ଉପନନ୍ଦ—ହେ ବ୍ରଜରାଜ ! ଦେଖି, ଶୁଣି ଆତଙ୍କରେ ଅମ୍ଭମାନଙ୍କ ହୃଦୟ ଥରହର ହେଉଅଛି, ଦେଖ ଦେଖ ଏବେ ଆକାଶମଣ୍ଡଳ ପ୍ରଳୟ ଘନଘଟାରେ ସମାଚ୍ଛନ୍ନ ! ସୌନ୍ଦର୍ଯ୍ୟଶାଳିନୀ ଗୋକୁଳ ନଗରୀ ଗଭୀର ଅନ୍ଧକାରରେ ପ୍ରଚ୍ଛନ୍ନ ! ବୃକ୍ଷ, ଲତା, ଏପରି କି କୌଣସି ପଦାର୍ଥର ଅସ୍ତିତ୍ୱ ଦୃଷ୍ଟିଗୋଚର ହେଉନାହିଁ । ଏ ଭୟାବହ ଦୁର୍ଘଟନା ଆମ୍ଭମାନଙ୍କ

ଜୀବନରେ କେବେହେଁ ଦେଖାଯାଇନଥିଲ, କଅଣ ହେଲ, ଆହା ! କଅଣ ହେଲ ? ଆଉ କି ହେବ କେଜାଣେ ? ହେ ଆର୍ଯ୍ୟ ! ଆମ୍ଭେମାନେ ତ ଏହା ଦେଖି କିଂ କର୍ତ୍ତବ୍ୟ ବିମୂଢ଼ ହୋଇଗଲୁଣି ।

ନନ୍ଦ — ଗୋପଗଣ ! ସ୍ୱଇ ଉପନନ୍ଦ ! ତୁମ୍ଭମାନଙ୍କ ପରି ମୁଁ ମଧ୍ୟ ଅବାକ୍ ନିସ୍ତବ୍ଧ ହୋଇଯାଉଛି, ଯଦି ଦୟାମୟ ହରି ଏ ବିପଦ ସାଗରରୁ ଉଦ୍ଧାର କରନ୍ତି, ତେବେ ହିଁ ରକ୍ଷା ;। ନୋହିଲେ ଆଉ ଆମ୍ଭମାନଙ୍କର ଗତ୍ୟନ୍ତର ନାହିଁ । ଝଞ୍ଝା, ଝଞ୍ଝା, କି ଭୟଙ୍କର ମେଘଗର୍ଜନ ! କି ଭୟାନକ ବଜ୍ରନାଦ ତା ସଙ୍ଗେ ସଙ୍ଗେ ପୁଣି ମୂଷଳ ଧାରରେ ଶିଳା ବୃଷ୍ଟି । ଏହି ଶୁଣ, ଗୋପବାଳକ ଗଣ ପ୍ରାଣ ଆକୁଳରେ ଚିତ୍କାର କରୁଅଛନ୍ତି । ହାୟ ! ହାୟ ! କେଉଁ ଆଡ଼େ ଯିବା, କି ଉପାୟ କରିବା ? ବାପ କୃଷ୍ଣରେ ! ତୁ ଏ ମହାବିପଦ ସମୟରେ କୁଆଡ଼େ ଅଛୁ ? ତୋ ଭିନ୍ନ ଏ ବିପଦକାଳରେ ଗୋପ-କୁଳର ଉଦ୍ଧାରକର୍ତ୍ତା ଆଉ କେହି ନାହିଁ ।

(ବେଗେ ଜନୈକ ଗୋପଶିଶୁର ପ୍ରବେଶ)

ଗୋପଶିଶୁ —(ଉଚ୍ଚସ୍ୱରେ) ଗୋପରାଜ ! ଗୋପରାଜ ! ଅଦ୍ଭୁତ ଘଟନା, ଅଲୌକିକ ଦୃଶ୍ୟ, ଆଉ ଗୋପ ଗୋପୀମାନଙ୍କର କୌଣସି ବିପଦ ନାହିଁ, ଆପଣମାନେ ସମସ୍ତେ ମୋ ସଙ୍ଗେ ଶୀଘ୍ର ଆସନ୍ତୁ । ଆମ୍ଭମାନଙ୍କର ବ୍ରଜସଖା ପ୍ରାଣ କହ୍ନାଇଁର ଐଶ୍ବର୍ଯ୍ୟ ଲୀଳା ସ୍ୱ ଚକ୍ଷୁରେ ଦେଖିବେ ଆସନ୍ତୁ । ଜଳଧାରା, ଝଡ଼ବୃଷ୍ଟି, ବଜ୍ରଘାତ, ଚଡ଼ଚଡ଼ି, ଘଡ଼ଘଡ଼ି କି ଅଉ ଗୋକୁଳ ବାସୀଙ୍କର କିଛି ଭୟନାହିଁ ।

ନନ୍ଦ — କଅଣ ହେଉଛି, କଅଣ ହୋଇଛି, ? ମୋ ପ୍ରାଣ କୃଷ୍ଣ କେଉଁଠି ବାପ ? କି ଘଟନା ହୋଇଛି ଚଞ୍ଚଳ କହ ।

ବାଳକ—ମହାରାଜ ! ଆଉ କଅଣ କହିବ ? ସ୍ୱଚକ୍ଷୁରେ ଦେଖି ଆମ୍ଭେମାନେ ଅବାକ୍ ହୋଇଅଛୁଁ । ଆପଣଙ୍କ ପୁତ୍ର କୃଷ୍ଣ ସାମାନ୍ୟ ମନୁଷ୍ୟ ନୁହନ୍ତି, ସେ ସାକ୍ଷାତ୍ ସ୍ୱୟଂ ଭଗବାନ୍, ଏଡ଼େ ବଡ଼ ଗୋବର୍ଦ୍ଧନ ପର୍ବତଟାକୁ କ୍ଷଣକ ଭିତରେ ଉପାଡ଼ିକାଇ ବାମହାତ କାଣିଅଙ୍ଗୁଳିରେ ଗୋଟିଏ ଛତାପରି ଉପରକୁ ଟେକି ଅଛନ୍ତି, ଅସଂଖ୍ୟ ଗୋପ, ଗୋପୀ, ଅସଂଖ୍ୟ ଗାଈ ବାଛୁରୀ ଆଉ ଅନ୍ୟାନ୍ୟ ଜୀବଜନ୍ତୁମାନେ ସେହି ପର୍ବତ ତଳେ ନିର୍ଭୟ ଭାବରେ ରହି ଅଛନ୍ତି, ଆପଣମାନେ ସେହିଠାକୁ ଯିବାପାଇଁ କୃଷ୍ଣ ମୋତେ ପଠାଇଦେଲେ । ସେହି ମାଧ୍ୱାଧର ଶ୍ରୀହରିଙ୍କର ଅଜ୍ଞ ଅଲୌକିକ କାର୍ଯ୍ୟ ଦେଖିବେ ଆସନ୍ତୁ ।

ସମସ୍ତେ—ଆଶ୍ଚର୍ଯ୍ୟ ! ଆଶ୍ଚର୍ଯ୍ୟ !! ଅତି ବିସ୍ମୟଜନକ ଘଟଣା । ଚାଲ, ଚାଲ, ଶୀଘ୍ର ଚାଲ । ହରିବୋଲ ! ହରିବୋଲ ! ହରିବୋଲ ।

(ଚଞ୍ଚଳରେ ସମସ୍ତଙ୍କ ପ୍ରସ୍ଥାନ)

ଯବନିକା ପତନ

## ଦ୍ୱିତୀୟ ଅଙ୍କ ସମ୍ପୂର୍ଣ୍ଣ



## ତୃତୀୟ ଅଙ୍କ ।

### ପ୍ରଥମ ଦୃଶ୍ୟ ।

ସ୍ଥାନ—ବୃନ୍ଦାବନ ପଥ ।

( ବୀଣା ବାଇ ବାଇ ଗୁଣଗାନ ସହ ଦେବର୍ଷି ନାରଦଙ୍କ ପ୍ରବେଶ )

ରାଗିଣୀ ଭୈରବୀ ଝମ୍ପା ତାଳ ।

ରେ ଅବୋଧ ମନ, ଜପ ହରିନାମ,
ଗାଅରେ ରସନା ଗାଅ ଉଚ୍ଚସ୍ୱରେ ।
ପତିତ ପାବନ, ଶ୍ରୀମଧୁସୂଦନ,
ତାଙ୍କ ବିନା କିଏ ତାରିବ ସଂସାରେ ॥

ତ୍ୱାଳଦାଅ କୃଷ୍ଣପଦେ ମନ ପ୍ରାଣ,
ନ ଦେଖିବ ଆଉ ଶମନ ପ୍ରାଙ୍ଗଣ;
ପାପ-ତମରାଶି ହୋଇବ ଦହନ,
ଶ୍ରୀହରିଙ୍କ ନାମ ମାଜି କା ତେଜରେ । ୧ ।

(ପ୍ରଗତ) ଅହୋ ! ଧନ୍ୟ, ପ୍ରଭୁଙ୍କର ଅପାର ଐଶ୍ୱରିକ ଶକ୍ତି ଧନ୍ୟ. ଏହି ପରାକ୍ରମଶାଳୀ ସର୍ବଶକ୍ତିମାନ୍ ପରମପୁରୁଷଙ୍କର ପଦପ୍ରାନ୍ତରେ ଯେଉଁ ଚତୁର ଭକ୍ତ ମନପ୍ରାଣ ସମର୍ପଣ କରି ସମସ୍ତ ଜଞ୍ଜାଳରୁ ମୁକ୍ତ ହୋଇଅଛୁ, ସେହି ଭକ୍ତ ଚୂଡ଼ାମଣି ମହାପୁରୁଷହିଁ ଧନ୍ୟ । କାରଣ, କୌଣସି ପ୍ରକାର ସାଂସାରିକ ମୋହଜାଲରେ ପଡ଼ି ଆଉ ସେ ମୋହିତ ହେବନାହିଁ । ଆଜ ପ୍ରଭୁଙ୍କର ଅନନ୍ୟସାଧାରଣ କ୍ଷମତାର ପ୍ରକୃତ ପରିଚୟ ପାଇ ସମଗ୍ରଜଗତ ବିସ୍ମୟରସରେ ଆପ୍ଳୁତ ହେବ; ଦେବରାଜ ଇନ୍ଦ୍ରର ମନରୁ ସନ୍ଦେହ ସମ୍ୟକ ରୂପରେ ଛୁଟିଯିବ ଓ ଏହି ଯଶୋଦାନନ୍ଦନ ଗୋପଶିଶୁ ବେଶଧାରୀ ଭଗବାନଙ୍କୁ ସର୍ବନିୟନ୍ତା ପରମପୁରୁଷ ବୋଲି ସ୍ୱୀକାରକରିବାକୁ ବାଧ୍ୟ ହେବ । ସାମାନ୍ୟ ପବନ ହିଲ୍ଲୋଳରେ ପ୍ରଶାନ୍ତ ସମୁଦ୍ର ଯେପରି ଭୀଷଣଭାବ ଧାରଣକରେ, ସେହିପରି ଦେବରାଜ ଇନ୍ଦ୍ରର ଏହି ମାୟା ପ୍ରଭାବରେ କ୍ରୁଦ୍ଧହୋଇ ଭଗବାନ ଯେଉଁ ଅଲୌକିକ କାର୍ଯ୍ୟର ଅନୁଷ୍ଠାନ କରିଛନ୍ତି, ତାହା ତାଙ୍କଭିନ୍ନ କାହାର ସାଧ୍ୟାୟତ୍ତ ନୁହେ । ନବନୀତରୁ ଜିଣି ସୁକୋମଳ କରପଲ୍ଲବରେ ଅଭ୍ରଭେଦୀ ଗୋବର୍ଦ୍ଧନଗିରିକି ଧାରଣ କରିବା କଣ ସହଜ ବ୍ୟାପାର ? ଭଗବାନଙ୍କ କୋପଦୃଷ୍ଟି ହେଲେ ତରଙ୍ଗସଙ୍କୁଳ ମହାସିନ୍ଧୁ ଯେ ଗୋଷ୍ପଦର ଆକାର ଧାରଣକରେ, ସୁମେରୁ ଶିଖର ବଲ୍ମୀକରେ ପରିଣତ ହୋଇପାରେ । ଏହା ବିଚିତ୍ର ନୁହେ । ଆଜ ପ୍ରଭୁଙ୍କ ବାମକରରେ ଗୋବର୍ଦ୍ଧନଗିରି ଧାରଣରୂପ ଅଲୌକିକ କାର୍ଯ୍ୟ ଦ୍ୱାରା ଜଗତ ବିସ୍ମିତ ହେଲା, କେତେ କେତେ କୃଷ୍ଣ ପ୍ରେମିକ ଭକ୍ତଙ୍କ ହୃଦୟରେ ଭକ୍ତିର ଖରସ୍ରୋତ ନଦୀ ପ୍ରବାହିତ ହେଲା, ପୁଣି କେତେ କେତେ ନୀରସ ଅନ୍ତର, ପାଷଣ୍ଡଙ୍କ

ଦର୍ପଣ ସମ ଅନ୍ତର ଅନେକ ପରମାଣରେ ପରିବର୍ତ୍ତିତ ହୋଇ ଜ୍ଞାନାଲୋକରେ ଅଲୌକିକ ହୋଇ ଉଠିଲା, ଫଳତଃ କିନ୍ତୁ ବିଶେଷ ଉଦ୍ଦେଶ୍ୟ ବ୍ୟତୀତ ସେହି ବିଶ୍ୱବ୍ୟାପକ ପରମପୁରୁଷ କେବେ କୌଣସି କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୁଅନ୍ତି ନାହିଁ; ତେବେ ସେହି ଉଦ୍ଦେଶ୍ୟ ନିର୍ଣ୍ଣୟ କରିବା ଜ୍ଞାନୀଗଣଙ୍କର ଅନନ୍ୟ-ସାଧାରଣ ପ୍ରତିଭାର ବହିର୍ଭୂତ, ସୁତରାଂ କ୍ଷୀଣପ୍ରାଣ ମନୁଷ୍ୟଙ୍କ ପକ୍ଷରେ ଯେ, ଏକାନ୍ତ ଦୁର୍ଜ୍ଞେୟ, ତାହା କହିବା ବାହୁଲ୍ୟ ।

ଆହା ! ଭାଗ୍ୟବତୀ ଯଶୋଦାର ସୌଭାଗ୍ୟର ଆଉ ଇୟତ୍ତା ନାହିଁ, କାହିଁକି ନା ? ସେ ଯଜ୍ଞର ଯଜ୍ଞେଶ୍ୱର, ଗୋପୀମାନଙ୍କର ଜୀବନସଙ୍ଗୀନ, ଶ୍ରୀକୃଷ୍ଣଙ୍କୁ ପୁତ୍ରରୂପରେ ପ୍ରତିପାଳନ କରୁଅଛି; କିନ୍ତୁ ସ୍ନେହବଶରେ ଭଗବାନଙ୍କ ଅତିଶଯ୍ୟ ନିବନ୍ଧନ ବା ଭଗବା-ନଙ୍କ ବିଶ୍ୱମୋହିନୀ ମାୟାର ଅପ୍ରତିହତ ପ୍ରଭାବରେ ପ୍ରକୃତ ତତ୍ତ୍ୱ ବୁଝିପାରୁ ନାହିଁ, ତା ନ ପାରିବାରହିଁ ସମ୍ଭାବନା ; କାରଣ ପ୍ରଭୁଙ୍କ ଲୀଳାଚାତୁର୍ଯ୍ୟର ପ୍ରକୃତ ମର୍ମ୍ମୋଦ୍ଭେଦନ୍ୟାର ସାଧକର ହୃଦୟଙ୍ଗମ କରିବାର ସାଧ୍ୟନାହିଁ । ଅଳ୍ପମତି ନାରୀ ହୋଇ କିପରି ତାହା ବୁଝିବ? କାଜେହିଁ ବହୁମୂଲ୍ୟ ମାଣିକ୍ୟକୁ ସାମାନ୍ୟ ପ୍ରସ୍ତର ଜ୍ଞାନରେ ଜଗତ୍ପିତାଙ୍କୁ ପୁତ୍ର-ଭାବ ପରମସୁଖରେ ଲାଳନପାଳନ କରୁଛି । ସଂସାରମଧ୍ୟରେ ଏପରି କା'ର ସାଧ୍ୟ ଯେ ଭଗବାନଙ୍କ ସେହି ମାୟାବନ୍ଧନକୁ ଛିନ୍ନ କରିପାରିବ ? ସୂତ୍ରରେ ଗ୍ରଥିତ ପୁତ୍ତଳିକା ସମ ଜୀବନକୁ ଏହି ସଂସାର ରଙ୍ଗ-ଭୂମିରେ ସେହି ଦୟାମୟ ନିୟତ ନୃତ୍ୟ କରାଉଛନ୍ତି; ଯେତେ-ବେଳେ ଯା ପ୍ରତି ତାଙ୍କର କୃପାହୁଏ, ସେତେବେଳେ ସେହି ଦୁର୍ଚ୍ଛେଦ୍ୟ ବନ୍ଧନକୁ ଛିନ୍ନ କରିପାରେ । ଏହି ଯେ ସ୍ୱୟଂ ଭଗବାନ ଗୋବର୍ଦ୍ଧନଗିରିକୁ ହସ୍ତ ଧରିଲାପରି ଠିକ ରହିଛନ୍ତି ଏବେ ମୁଁ ନିଜ ଏ ଅନ୍ତରାଳରେ ରହି ପ୍ରଭୁଙ୍କର ଏ ଅଲୌକିକ ଲୀଳା ଦର୍ଶନ କରିବି (ଯାଏଁ)—

(ଅନ୍ତରାଳରେ ପ୍ରସ୍ଥାନ)

ଦୃଶ୍ୟପରିବର୍ତ୍ତନ



## ତୃତୀୟ ଅଙ୍କ ।

## ଦ୍ୱିତୀୟ ଦୃଶ୍ୟ ।

(ଗୋବର୍ଦ୍ଧନଗିରି ନିକଟ ସମତଳଭୂମି)

(ଡରଡର ହୋଇ ଗୋପଗୋପିମାନେ ଧାଇଁଥିବା ଅବସ୍ଥା)

ସଦା—ଆରେ ଗଦା ! ଚଞ୍ଚଳ ଧାଇଁ ଆରେ, ଚଞ୍ଚଳ ଧାଇଁଆ ।

ଗଦା—ହଦାଭାଇ ! ରହରେ ରହ, ମୁଁ ଦଉଡ଼ିପାରୁନାହିଁ, ମୋତେ ସଙ୍ଗରେ ନେରେ ଭାଇ ! ମୋତେ ସଙ୍ଗରେ ନେ ।

ହଦା—ଆରେ ଗଦା ! ରହରେ ଟିକଏ ରହ ମୋ ଘଣ୍ଟି, ସମସ୍ତେ ସଙ୍ଗହୋଇ ଯିବା ଟିକଏ ରହ, ରହ ।

ଗଦା—ଆରେ ଦେଖୁନାହୁଁ ? କପର ଲୁଆପଥର ମାଡ଼ ହେଉଛି ? ଆଉ ରହିବ ବୋଲି କଅଣ କହୁଛୁରେ, ବେଗି ବେଗି ଧାଇଁଆ ଧାଇଁଆ ।

ହଦା—ଆରେଭାଇ ! ଏହି ଦେଖରେ, ଗୋବର୍ଦ୍ଧନ ଗିରିଟା କପରି କୃଷ୍ଣ ହାତରେ ଛତାପରି ରହିଛି ଓଃହୋ ! କି ଆଶ୍ଚର୍ଯ୍ୟ ! ଦଉଡ଼ ଅ.ହରେ ଭାଇ , ବେଗେ ଦଉଡ଼ ଅ.ସ ।

ଗଦା—ହେଇ ଦେଖରେ ଭାଇ ! ଗ୍ରାମବାଗରୁ ଗୋପଗୋପୀମାନେ କପରି ଧାଇଁଛନ୍ତି । ଆସରେ ଭାଇ, ଆଗ ଆମେମାନେ ଗିରିତଳେ ରହିଯିବାରେ ଚଞ୍ଚଳ ଦଉଡ଼ ଆସ ।

ନଧିଆ—ଆରେଭାଇ ! ମୁଁ ଦଉଡ଼ ପାରୁ ନାହିଁରେ ରହୁଥାଅ, ରହୁଥାଅ, ମୁଁ ତମମାନଙ୍କ ପଛରୁ ଲାଗିଯାଏଁ (ଦଉଡ଼ିବାର)

ଝିଙ୍ଗିଆ—ଚାଲରେ ନଧିଭାଇ ! ଦଉଡ଼ିଚାଲ ଦଉଡ଼ିଚାଲ !

( ବେଗେ ସମସ୍ତଙ୍କର ପ୍ରସ୍ଥାନ )

ପଟ ପରିବର୍ତ୍ତନ



## ତୃତୀୟ ଅଙ୍କ ।

### ତୃତୀୟ ଦୃଶ୍ୟ ।

ଗୋବର୍ଦ୍ଧନ ଗିରି ।

(ଶ୍ରୀକୃଷ୍ଣ ବାମହସ୍ତ କନିଷ୍ଠାଙ୍ଗୁଳି ଅଗ୍ରରେ ଗୋବର୍ଦ୍ଧନ ପର୍ବତକୁ ଧାରଣକରି ସିଦ୍ଧଙ୍ଗ ଠାଣିରେ ଦଣ୍ଡାୟମାନ ଓ ଗୋପବାଳକ ମାନେ ବାଡ଼ି, ଲଉଡ଼ି, ଠେଙ୍ଗ ଓ ଛିଙ୍କ ଦେଇ ନାନା ଭଙ୍ଗିରେ ଦଣ୍ଡାୟମାନ ପୂର୍ବକ ନୃତ୍ୟ ଓ ଗାନ କରନ୍ତୁ ।)

### ଗୀତ ।

(ତାଳ ଏକତାଳି ।)

(ଜୟ) କାଳନ୍ଦୀ କୂଳିଆ, କଦମ୍ବ ମୂଳିଆ,
(ଜୟ) ଗୋବର୍ଦ୍ଧନଗିରି ତୋଳିଆ ହେ ।

ବ୍ରଜଧୂଳିସ୍ନ ଶ୍ୟାମ ଗୋରଜ ବୋଳିଆ,
କାଳିୟ ଦଳିଆ, ଗୁଞ୍ଜ ପୀତଦୁକୂଳିଆ,
ରଙ୍ଗ କାଉଁଶ ମାଳିଆ, ଶିଖଣ୍ଡ ଚୂଳିଆ,
ଗୋପାଳ ମେଳିଆ, ବନମାଳିଆ ହେ । ୧ ।

ଘନଶ୍ୟାମଳିଆ, ମୁନି ମନ ବଟୋଳିଆ,
ନାଚ ବଟାଳିଆ ନବରଙ୍ଗିଆ କାଳିଆ,
ଗୋଧନଗୁଳିଆ କାହ୍ନୁ ଗୋକୁଳ ପାଳିଆ,
ଶ୍ରୀକର ଚାଳିଆ, ଧୂତଟାଳିଆ ହେ । ୨ ।

(ନନ୍ଦ, ଉପନନ୍ଦ ଓ ଅନ୍ୟାନ୍ୟ ଗୋପମାନଙ୍କ ପ୍ରବେଶ)

ନନ୍ଦ—ଆହା ! ଧନ୍ୟ ଧନ୍ୟ ! ଲୀଳାମୟ ମାୟା ଧରରେ ! କହ ଭାଇ ରୂ ଏ ଅଭାଗା ମହାପାପୀ ନନ୍ଦର କେଉଁ ପୁଣ୍ୟବଳରେ ପୁତ୍ରରୂପେ ଜନ୍ମିଥିଲୁ । ମୁଁ ଅଧମ, ଏତେଦିନ ପର୍ଯ୍ୟନ୍ତ ଅଜ୍ଞାନ

ଅନ୍ଧକାରରେ ମୁଗ୍ଧହୋଇ ତୋତେ ଚିହ୍ନିପାରି ନଥିଲି ।
ଆଜ ମୋର ସେହ ମହାଭ୍ରମ ବଦୂରତ ହେଲା, ଛଳନାମୟ !
ଭକ୍ତପ୍ରତି ତୋର ଏତେ ଦୟା ! ଧନ୍ୟ ତୋର ଲୀଳା, ଖେଳା ।
(ଉପନନ୍ଦ ପ୍ରତି) ଶୁଣ ଉପନନ୍ଦ ! ଆଉ ସ୍ୱର୍ଗର ଇନ୍ଦ୍ରକୁ ଭୟ
କରିବାର କିଛି କାରଣ ନାହିଁ । ଗାଅ, ଗାଅ, ବ୍ରଜଶିଶୁଗଣ !
ପ୍ରେମାନନ୍ଦେ ଗାଅ ଅଜି ଶ୍ରୀକୃଷ୍ଣର ଗୁଣ, ହେଉ ଭକ୍ତମାନ-
ଙ୍କର କର୍ଣ୍ଣ ଚରିତାର୍ଥ । ଗାଅ ଏବେ ସେହି ପ୍ରେମ-ମଧୁର
ସଙ୍ଗୀତ, ନାଚ ନାଚ ଢଳି ଢଳି ନାଚରେ ସରବେ ।

ବାଳକ ମାନଙ୍କ

## ଗୀତ ।

(ଝୁଣାସ୍ୱ ପଦ)

କାରତ ରଷାଳିଆ ହେ ରଙ୍ଗ ଜାମୁଡ଼ାଳିଆ,
ଚନ୍ଦନ ବୋଳିଆ ଅଙ୍ଗ ହେ ଢ଼ଗଢ଼ମାଳିଆ,

ପ୍ରେମ ପ୍ରୀତି-ଥାଳିଆ ସୁରସନ ଉଗ୍ରକିଆ,
ସର ଚଞ୍ଚାଳିଆ, ଭାବ ଖେଳିଆ ହେ । ୩ ।

(ଜୟ) କାଳନ୍ଦୀ କୂଳିଆ, କଦମ୍ବ ମୂଳିଆ,
(ଜୟ) ଗୋବର୍ଦ୍ଧନ ଗିରି ତୋଳିଅ ହେ । ୪ ।

( ସମସ୍ୱରେ ଗାନ ଓ ନୃତ୍ୟ )

(ଇନ୍ଦ୍ରଙ୍କ ପ୍ରବେଶ)

ଇନ୍ଦ୍ର—(କରଯୋଡ଼ି) କ୍ଷମାକର ! କ୍ଷମାକର ! ଗୋକୁଳ ବିହାରି !
ମାୟାମୟ ! ଜଗଦୀଶ ! ହେ ବ୍ରଜବାଳକ, ଦେବଙ୍କ ଦୁର୍ଗତି
କରିବାକୁ ଧରେ ତନ, ମାୟାବଳେ ଜନମିଛ ମର୍ତ୍ତ୍ୟ
ଦୟାମୟ ! ଭ୍ରମାନ୍ଧ ଦେବେନ୍ଦ୍ର ମୁହିଁ ଐଶ୍ୱର୍ଯ୍ୟ ଗରବେ,
ଅପମାନ ଦେଇଅଛି ନଜବୁଦ୍ଧି ଦୋଷେ । ଅଦ୍ଭୁତ ଶକତ
ତବ କରି ଦରଶନ, ମାଗୁଅଛି କ୍ଷମା ପ୍ରଭୁ ! କରି ମୁଁ

ପ୍ରାର୍ଥନା, ଅଜ୍ଞାନବଶ ବଂଶୀପାଣି ନିକୁଞ୍ଜ ମଣ୍ଡନ, ହତଦର୍ପେ ଯାଉଛି ମୁଁ ବ୍ରହ୍ମାଙ୍କ ନିକଟେ, ତୁମ୍ଭର ଅପୂର୍ବ ଲୀଳା ଅତୁଳ ମାଧୁରୀ, ସେକଥା ମୁଁ ଶୁଣିଥିଲି ପିତାମହଙ୍କ ମୁଖୁଁ, ତେଣୁ ଧ୍ୱସ୍ତ ଅଛି ମମ ମନର ଅନ୍ଧକାର, ନିଜଗୁଣେ କ୍ଷମାଦେଇ ଅଧମ ଚାହିଁବ, ମୁହିଁ ଇନ୍ଦ୍ର, କ୍ଷମା ମାଗେ ଉପେନ୍ଦ୍ରଙ୍କ ପାଶେ ।

(ଶ୍ରୀକୃଷ୍ଣଙ୍କ ପଦତଳେ ପତନ)

ଶ୍ରୀକୃଷ୍ଣ—ଉଠ, ଉଠ, ଦେବ ଶଚୀପତି ! ମୁହିଁ ତବ ଚିରଦାସ, ଏ କିସ ହେ ଆଜ ! ସାଧୁଜନ ବୃତ୍ତି ପରେ ଏକି ବିପରୀତ !

ଇନ୍ଦ୍ର—(ଭକ୍ତିଭରେ) ଶରଣାଗତପାଳକ ହେ ପ୍ରଭୋ ! ଆଉ କାହିଁକି ଏ ଦାସକୁ ଲଜ୍ଜା ଦେଉଅଛ, ମୁଁ ପ୍ରକୃତ ଶ୍ରୀଚରଣରେ ଅପରାଧୀ ହୋଇଅଛି । କିନ୍ତୁ ନିଜଗୁଣେ କ୍ଷମାକର ନିଜର ଦୟାମୟ ମହିମା ମଧୁନାମ ସାର୍ଥକ କର ପ୍ରଭୁ ! ମାୟାଧର ! ମୁଁ କେବଳମାତ୍ର ଜଗତ ମଧ୍ୟରେ ପ୍ରସ୍ତୁତ କରିବା ଅଭିପ୍ରାୟରେ ଏହି ଯୁଦ୍ଧଜାଲ ବିସ୍ତାର କରିଥିଲି; ମୋର ଏହି କାର୍ଯ୍ୟ ସଂସାର ମଧ୍ୟରେ ପ୍ରଭୁଙ୍କର ଗୋଟିଏ ଅକ୍ଷୟ ଗୌରବସ୍ତମ୍ଭ ପ୍ରୋଥିତ ହେଲା । ଯେତେଦିନ ପର୍ଯ୍ୟନ୍ତ ଚନ୍ଦ୍ରସୂର୍ଯ୍ୟ ଉଦୟ ଅସ୍ତ ହେଉଥିବେ, ସେତେଦିନାବଧି ଏହି ସ୍ତମ୍ଭ ଅକ୍ଷୁଣ୍ଣ ଭାବରେ ବିରାଜିତ ହେବ, ଅଦୂରଦର୍ଶୀ ବାଳକ ଯେପରି ପିତାମାତାଙ୍କ ନିକଟରେ ଅପରାଧ କରି କ୍ଷମାଭିକ୍ଷା କରେ, ମୁଁ ସେହିପରି ଆପଣଙ୍କ ଶ୍ରୀଚରଣରେ ଶରଣ ନେଇ ରକ୍ଷା ପ୍ରାର୍ଥନା କରୁଛି, ପ୍ରଭୁ ! ଏ ଦାସପ୍ରତି ପ୍ରସନ୍ନ ହୁଅନ୍ତୁ ।

## ସ୍ତୁତି

ଜୟ ଯଦୁପତି, ଅଗତିର ଗତି,
ଜୟ ଜଗତ ଈଶ୍ୱର ।
ଜୟ ହେ କେଶବ, ଜୟ ହେ ମାଧବ,
ମୋହନ ମୁରଲୀ ଧର ।

ଜୟ ଜନାର୍ଦ୍ଦନ, ଚରାଚର ରଞ୍ଜନ,
ଜୟ ଜୟ ଖଗମ୍ବର,
ଜୟ ବୃନ୍ଦାବନ- ନନ୍ଦନ ମଦନ,
ଜୟ ଯଶୋଦା କୁମର ।

(ଜୟ ବ୍ରଜ ଜୀବନ)

ଜୟ ଶ୍ରୀ ମଧୁସୂଦନ ଆରତ ହରଣ,
ଜୟ ଗୀନଦୟାମୟ ପତିତ ପାବନ,
ଜୟ ଶରଣ ରକ୍ଷଣ ମନ ମୋହନ ॥

(ସ୍ତବାବଶେଷେ କରଯୋଡ଼ି ଇନ୍ଦ୍ରବା)

ଶ୍ରୀକୃଷ୍ଣ—ଦେବରାଜ ! ତୁମ୍ଭ ବିନୟଗର୍ଭ ବଚନରେ ମୁଁ ଅତ୍ୟନ୍ତ ପ୍ରୀତ ହେଲି, ସୁଶୀତଳ ଜଳ ବର୍ଷଣରେ ପ୍ରଚଣ୍ଡ ଅଗ୍ନି ଯେପରି ନିର୍ବାଣ ହୁଏ, ସେହିପରି ଏବେ ମୋର ସମସ୍ତ କ୍ରୋଧ ଦୂରହେଲା । ଏଥର ତୁମ୍ଭ ଜ୍ଞାନଚକ୍ଷୁ ଯାହା ଉନ୍ମୀଳିତ ହୋଇଅଛି, ଏହାହିଁ ଯଥେଷ୍ଟ । ଆଉ କେବେହେଲେ ଏପରି ଦୁଃସାହସିକ କାର୍ଯ୍ୟ କରିବ ନାହିଁ । ଅଗ୍ନିରେ ଦଗ୍ଧ ହେଲେ ସୁବର୍ଣ୍ଣ ଯେପରି ବିମଳ ହୁଏ, ସେହିପରି କୁକାର୍ଯ୍ୟ ଅନୁଷ୍ଠାନ କଲା ପରେ ଯଦି କେହି ଅନୁତାପ ଆସି ଉପସ୍ଥିତ ହୁଏ, ତ' ହେଲେ ସଙ୍ଗେ ସଙ୍ଗେ ତା'ର ପାପରୁ ଅନେକ ଅଂଶ ପ୍ରାୟଶ୍ଚିତ୍ତ ହୋଇ ଯାଏ, ତୁମ୍ଭେ ଅନ୍ୟାୟ କ୍ରୋଧର ବଶୀଭୂତ ହୋଇ କ୍ଷମତାର ଅତୀତ ବିଷୟରେ ହସ୍ତକ୍ଷେପ କରିଥିଲେ, ସେଥିପାଇଁ ସମ୍ୟକ୍ କୃତକାର୍ଯ୍ୟ ହୋଇପାରିଲ ନାହିଁ । ଯାହାହେଉ ଏବେ ତୁମ୍ଭର ସମସ୍ତ ଅପରାଧ କ୍ଷମା କଲି, ତୁମ୍ଭେ ସ୍ୱଚ୍ଛନ୍ଦ ମନେ ଆପଣା ଭୁବନକୁ ଗମନ କର । ଦୁରାଶାର ଦାସ ହୋଇ ଆଉ କେବେହେଲେ ଦୁର୍ବଳ ହୃଦୟରେ ସ୍ୱୀୟ ଅସୀମ ଶକ୍ତି ପରୀକ୍ଷା କରିବ ନାହିଁ ।

ଇନ୍ଦ୍ର—ହେ ଅକ୍ଷୟ ଦୟାମୟ ! ପ୍ରଭୁ ! ଏବେ ଏହି ସେବକ ପାଦ-
ପଦ୍ମେର ପ୍ରଣାମକରି ବିଦାୟ ହେଉଛି ।

(ଇନ୍ଦ୍ରଙ୍କ ପ୍ରସ୍ଥାନ ସମୟେ ବ୍ରଜବାଳକ ଗଣ ସମସ୍ୱରେ)

ଜୟ ବ୍ରଜଯୁବରାଜ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଜୟ ।
ଜୟ ବୃନ୍ଦାବନଚନ୍ଦ୍ର ଯଶୋଦାଦୁଲାଳ ନନ୍ଦନନ୍ଦନଙ୍କ ଜୟ
ଜୟ ନଟନାଦ ବିହାରୀ ଶ୍ୟାମସୁନ୍ଦରଙ୍କ ଜୟଜୟ ! ଗିରିଧାରୀଙ୍କର ଜୟ

## (ଜୟଗୀତିକା)

ସର୍ଦ୍ଧନସ୍ୱର—ତାଳ ଝେମ୍ପା ।

ଜୟ ଜୟ ପ୍ରାଣସଖା ଚିରବରଧାରୀ !
ଜୟ ଗୋକୁଳ ମଣ୍ଡନ ଦେବ ଦଇତ୍ୟାରି !
ଜୟ ବୃନ୍ଦାବନ ଚନ୍ଦ୍ର କମଳଲୋଚନ !
ଜୟ ଦୁଃଖ ନଶନାହେ ସନ୍ତାପ ମୋଚନ ॥
ଜୟ ଇନ୍ଦ୍ରଗର୍ବ ହାରୀ ନାରଦବରଦ ।
ଜୟ ଜଗତ ନାଟୁଆ ମାନସମୋହନ ।
(ଜୟ ହେ ! ଜୟ ହେ !
ଗୋପୀଙ୍କ ଜୀବନଧନ ଜୟ ହେ ଜୟ ହେ ।
ଭକତ ମନରଞ୍ଜନ ଜୟ ହେ ଜୟ ହେ ।
ଗୋଲୋକର ନିତ୍ୟ ଧନ ଜୟ ହେ ଜୟ ହେ ।
(ସମସ୍ୱରେ ଗାନ ଓ ଦଣ୍ଡନୃତ୍ୟ ଅଭିନୟ)

## ଯବନିକା ପତନ ।

ଇତି ଗୋବର୍ଦ୍ଧନ ଲୀଳା ନାଟକ ସମ୍ପୂର୍ଣ୍ଣ



Printed by B S, Das, the Mukur Press Cuttack.

# ଶ୍ରୀ ଶ୍ରୀ ରାଧାଗୋବିନ୍ଦ-ରାସଲୀଳା ମଣ୍ଡଳୀର

## ( ନାଟକାବଳୀ )




ଶ୍ରୀକୃଷ୍ଣଙ୍କ ଜନ୍ମଲୀଳା ନାଟକ
ପ୍ରଥମଖଣ୍ଡ ଟ ୦ ।/
ଏଜନ ଦ୍ୱିତୀୟ ଖଣ୍ଡ ଟ ୦ ।
ବାଲ୍ୟଲୀଳା ନାଟକ ୧ମ ଓ
୨ୟ ଖଣ୍ଡ ଏକତ୍ର ଟ ୦ ୳
ପୌଗଣ୍ଡ ଲୀଳା ନାଟକ ଟ ୦ ।୵
ଦାନଲୀଳା ଓ
ନୌକାଉଦ୍ଧାର ନାଟକ ଟ ୦ ୷
ବସ୍ତ୍ର ହରଣ ଲୀଳା ,, ଟ ୦ ୶
କାଳୀୟଦମନ ନାଟକ ଟ ୦ ୶
ଗୋବର୍ଦ୍ଧନ ଲୀଳା ନାଟକ ଯନ୍ତ୍ରସ୍ଥ
ବତ୍ସ ହରଣ ନାଟକ ଟ ୦ ।
ଶରତ୍ ରାସ (ନାଟକ) ଟ ୦ ।/
ରାସଲୀଳା (ଗୀତାଭିନୟ) ଟ ୦ ।୶
ନିତ୍ୟାନୁରାଗଲୀଳା ,, ଟ ୦ ୷
ଝୁଲଣ (ଗୀତାଭିନୟ) ଟ ୦ ୷
ନିତ୍ୟାନୁରାଗ (ନାଟକ) ଟ ୦ ।
ବିଦଗ୍ଧ ବିଳାସ (ନାଟକ) ଟ ୦ ।
ରାଧାଚନ୍ଦ୍ର ଦଶା (ନାଟକ) ଟ ୦ ୶୬
ବିରହ ମାନ (ନାଟକ) ଟ ୦ ।
ଦୁର୍ଜ୍ଜୟମାନ (ନାଟକ) ଟ ୦ ।
ମାନ ଭଞ୍ଜନ (ନାଟକ) ଟ ୦ ।
କଳଙ୍କ ଭଞ୍ଜନ (ନାଟକ) ଟ ୦ ।
କୃଷ୍ଣ କାଳୀ ( ନାଟକ ) ଟ ୦ ୶
ମାନ ମିଳନ (ନାଟକ) ଟ ୦ ।
ଅକ୍ରୂର ସମ୍ବାଦ (ନାଟକ) ଟ ୦ ।
ଦୋଳଲୀଳା (ନାଟକ) ଟ ୦ ୶
ରାଇ ରଜା (ନାଟକ) ଟ ୦ ୶
ଗୋଷ୍ଠଲୀଳା (ନାଟକ) ଟ ୦ ।
କିଶୋର ଚନ୍ଦ୍ର (ନାଟକ) ଟ ୦ ୶
ବସନ୍ତ ଲୀଳା (ନାଟକ) ଟ ୦ ।
ସୁବଳ ମିଳନ (ନାଟକ) ଟ ୦ ୷
ବସନ୍ତ ଉଦ୍ଧାର ନାଟକ ଟ ୦ ।
ପ୍ରେମବିଳାସ ନାଟକ ଟ ୦ ।
ବିଦଗ୍ଧମାଧବ (ନାଟକ) ଟ ୧ (
ଗୋଷ୍ଠବିହାର (ନାଟକ) ଟ ୦ ୷
ଗୋଷ୍ଠଯାତ୍ରା (ନାଟକ) ଟ ୦ ୷
ମଥୁରାଯାତ୍ରା (ନାଟକ) ଟ ୦ ।
ବ୍ରଜବର୍ଜ୍ଜନ (ନାଟକ) ଟ ୦ ।
କଂସବଧ (ନାଟକ) ଟ ୦ ୳


ଏକମାତ୍ର ପ୍ରାପ୍ତି ସ୍ଥାନ
ଦାଶରଥି ପୁସ୍ତକାଳୟ



ପୋଃ ଅଃ ବୁଦନଗୌଡ
ବାଲୁବଜାର—କଟକ ।